# ଉତ୍କଳ ପ୍ରସଙ୍ଗ

**The Utkal Prasanga**
**December 2010**


| ୬୭ ଭାଗ | ୫ମ ସଂଖ୍ୟା | ମାର୍ଗଶିର–ପୌଷ | ଡିସେମ୍ବର – ୨୦୧୦ |
|---|---|---|---|





**ପ୍ରତିଖଣ୍ଡ : ଟ.୫.୦୦**





ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ – ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର – ୭୫୧୦୦୧

ଇ–ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in
ଫୋନ : ୦୬୭୪–୨୫୩୦୨୧୧

ଡିସେମ୍ବର ୨୦୧୦

# ସୂଚୀ

---

**ତଥ୍ୟ – ନିର୍ଦ୍ଦେଶକ, ଜନଗଣନା, ଓଡ଼ିଶା, ଭୁବନେଶ୍ୱର**

# ୨୦୧୧ ମସିହାର ଜନଗଣନା

*ବିଷ୍ଣୁପଦ ସେଠୀ*

ଏକ ନିର୍ଦ୍ଧାରିତ ସମୟରେ ଦେଶର ସଂପୂର୍ଣ୍ଣ ଏବଂ ବିଶ୍ୱାସଯୋଗ୍ୟ ଲୋକସଂଖ୍ୟା ଚିତ୍ର ଏବଂ ତତ୍‌ସମ୍ବନ୍ଧୀୟ ତଥ୍ୟାବଳୀ ଜନଗଣନା ଯୋଗାଇଥାଏ । ଜନଗଣନାରେ ଏକ ନିର୍ଦ୍ଧାରିତ ସମୟସୀମା ମଧ୍ୟରେ ସମସ୍ତ ଲୋକଙ୍କର ତଥ୍ୟ ସଂଗ୍ରହ କରାଯାଉଥିବାରୁ ଜନଗଣନା ତଥ୍ୟଗୁଡ଼ିକ ନିର୍ଦ୍ଦିଷ୍ଟ ସମୟ ପାଇଁ ଉଦ୍ଦିଷ୍ଟ । ଅନ୍ୟାନ୍ୟ ପଦ୍ଧତିରେ ସଂଗ୍ରହ ହେଉଥିବା ତଥ୍ୟ ତୁଳନାରେ ଜନଗଣନା ପଦ୍ଧତିର ସ୍ୱତନ୍ତ୍ରତା ଅଛି । ଜନଗଣନାରେ ଅଳ୍ପ ସଂଖ୍ୟକ ଏବଂ ସ୍ୱତନ୍ତ୍ର ସମ୍ପ୍ରଦାୟକୁ ଯାଞ୍ଚ କରିବାର ସମ୍ଭାବନା ଅଛି ଏବଂ କ୍ଷୁଦ୍ର ଭୌଗଳିକ ସ୍ଥାନଗୁଡ଼ିକର ତଥ୍ୟଗୁଡ଼ିକ ମଧ୍ୟ ମିଳିପାରିବ । ଏପରିକି ପ୍ରଶାସନର କ୍ଷୁଦ୍ରତମ ଅଞ୍ଚଳ – ଗ୍ରାମ ଏବଂ ଏହାକୁ ଭାଗ କରାଯାଇ ଗଠିତ 'ଗଣନା ବ୍ଲକ'ର ଲୋକସଂଖ୍ୟାକୁ ମଧ୍ୟ ଯାଞ୍ଚ କରାଯାଇ ପାରିବ । ଜନଗଣନା ହେଉଛି ବ୍ୟକ୍ତି ସମ୍ବନ୍ଧୀୟ ଆର୍ଥିକ ଏବଂ ସାମାଜିକ ତଥ୍ୟଗୁଡ଼ିକର ସଂଗ୍ରହ, ମୂଲ୍ୟାୟନ, ବିଶ୍ଳେଷଣ, ପ୍ରକାଶନ ଏବଂ ପରିବେଷଣର ଏକ ସଂପୂର୍ଣ୍ଣ କାର୍ଯ୍ୟଧାରା । ଏହା ଦେଶର ତଥା କୌଣସି ନିର୍ଦ୍ଦିଷ୍ଟ ଭୌଗଳିକ ସୀମାବଦ୍ଧ ଅଞ୍ଚଳର ଅଧିବାସୀ ସମ୍ବନ୍ଧରେ ଏକ ନିର୍ଦ୍ଦିଷ୍ଟ ସମୟର ତଥ୍ୟ ଯୋଗାଇଥାଏ । ଜନଗଣନା କାର୍ଯ୍ୟର ବିଶାଳତା ଓ ବ୍ୟାପକତା ଯେ କେତେ ତାହା ଓଡ଼ିଶା ଭଳି ଏକ ରାଜ୍ୟରୁ ସ୍ପଷ୍ଟରୂପେ ଅନୁମିତ ହୁଏ । ଅଧିକନ୍ତୁ, ଆଇନ ଅନୁସାରେ ଜନଗଣନା କାର୍ଯ୍ୟ ସମସ୍ତଙ୍କ ପାଇଁ ଏକ ବାଧ୍ୟତାମୂଳକ କର୍ତ୍ତବ୍ୟ । ଦୂରଦୂରାନ୍ତରେ ବିକ୍ଷିପ୍ତ ଭାବରେ ରହୁଥିବା ଲୋକମାନଙ୍କ ଏବଂ ଗୋଷ୍ଠୀ ସମ୍ପ୍ରଦାୟଙ୍କ ବିଷୟରେ ସଠିକ୍ ତଥ୍ୟ ସଂଗ୍ରହ ଓ ଏହାର ସଂପୂର୍ଣ୍ଣ ସମ୍ପାଦନ ପ୍ରଶାସନ ପ୍ରତି ଏକ ଆହ୍ୱାନ । ଏହାକୁ ଦୃଷ୍ଟିରେ ରଖି ଜନଗଣନାରେ ଆବଶ୍ୟକ ହେଉଥିବା ଉପକରଣ, ନିଯୁକ୍ତ ହେଉଥିବା କର୍ମଚାରୀ, ଜନଗଣନାର ସମୟ ସାରଣୀ, ଆବଶ୍ୟକ ହେଉଥିବା ଅର୍ଥ ଏବଂ ସାଧାରଣ ପ୍ରଶାସନିକ ସୁବିଧା ସୁଯୋଗ ବିଷୟରେ ଏକ ସଂକ୍ଷିପ୍ତ ସୂଚନା ପ୍ରଦାନ କରାଯାଇଛି ।

ଭାରତ ତଥା ଓଡ଼ିଶା ରାଜ୍ୟରେ ନିରବଚ୍ଛିନ୍ନଭାବେ ଅନୁଷ୍ଠିତ ହେଉଥିବା ଜନଗଣନାର ଏକ ଗୌରବମୟ ଐତିହ୍ୟ ଅଛି । ୨୦୧୧ ମସିହାର ଜନଗଣନା ଦେଶର ଜନଗଣନାକ୍ରମର ପଞ୍ଚଦଶ ଏବଂ ସ୍ୱାଧୀନତା ପରବର୍ତ୍ତୀ ସପ୍ତମ ଜନଗଣନା । ୨୦୧୧ ମସିହା ଜନଗଣନାରେ ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର ପ୍ରସ୍ତୁତି ଏକ ଉଲ୍ଲେଖନୀୟ ପଦକ୍ଷେପ । ୨୦୧୧ ମସିହା ଜନଗଣନା ଦୁଇଟି ପର୍ଯ୍ୟାୟରେ ଅନୁଷ୍ଠିତ ହେବ । ପ୍ରଥମ ପର୍ଯ୍ୟାୟ ଗୃହ ତାଲିକା ଓ ଗୃହଗଣନା ଏବଂ ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର ପ୍ରସ୍ତୁତି ଏବଂ ଦ୍ୱିତୀୟ ପର୍ଯ୍ୟାୟରେ ହେବ ୨୦୧୧ ମସିହା ଫେବୃଆରୀ ୯ରୁ ୨୮ ଗଣନା ଏବଂ ମାର୍ଚ୍ଚ ୧ରୁ ମାର୍ଚ୍ଚ ୫ ପର୍ଯ୍ୟନ୍ତ ପୁନର୍ବାର ଯାଞ୍ଚ କାର୍ଯ୍ୟ ସଂପାଦିତ ହେବ ।

ପୂର୍ବବର୍ତ୍ତୀ ଜନଗଣନାର ତଥ୍ୟଗୁଡ଼ିକ ତୁଳନାରେ ୨୦୧୧ ମସିହା ଜନଗଣନାର କେତେକ ଭିନ୍ନତା ଅଛି । ସମଗ୍ର ଦେଶ ପାଇଁ ୨୦୧୧ ମସିହା ଜନଗଣନାର ବୈଶିଷ୍ଟ୍ୟଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା....

୧. ଏଥର ୨୦୧୧ ଜନଗଣନାରେ ଜନଗଣନା ସହିତ ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର (NPR) ପ୍ରସ୍ତୁତ ହେବ । ଏହା ଦେଶରେ ପ୍ରଥମଥର ପାଇଁ ହେବାକୁ ଯାଉଛି ।

୨. ଜନଗଣନାର କାର୍ଯ୍ୟ ପାଇଁ ଜନଗଣନା ଆଇନ ୧୯୪୮ରେ ଥିବା ବ୍ୟବସ୍ଥାଗୁଡ଼ିକ ଲାଗୁ ହେବ । କିନ୍ତୁ ନାଗରିକ ଆଇନ୍ ୧୯୫୫ ରେ ଥିବା ବ୍ୟବସ୍ଥାଗୁଡ଼ିକ ଏବଂ ଜନସଂଖ୍ୟା ରେଜିଷ୍ଟର ପ୍ରସ୍ତୁତି ନାଗରିକ ନିୟମ (ନାଗରିକ ପଞ୍ଜିକରଣ ଏବଂ ଜାତୀୟ ପରିଚୟପତ୍ର ବିତରଣ) ଦ୍ୱାରା ନିୟନ୍ତ୍ରିତ ।

୩. ଜନଗଣନାର କାର୍ଯ୍ୟ ପରିସର ୩୫ଟି ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳଗୁଡ଼ିକରେ ପରିବ୍ୟାପ୍ତ ।

୪. ସମଗ୍ର ଦେଶରେ ମୋବାଇଲ ଫୋନ୍, କମ୍ପ୍ୟୁଟର ଏବଂ ଇଣ୍ଟରନେଟ ସଂଯୋଗ ଇତ୍ୟାଦିର ବ୍ୟବହାର କରୁଥିବା ବ୍ୟକ୍ତିମାନଙ୍କ ସଂଖ୍ୟା ସଂଗ୍ରହ କରିବା ।

୫. ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର ପ୍ରସ୍ତୁତି ସମୟରେ ଆଙ୍ଗୁଳି ଛାପ ନେବାରେ ଏବଂ ଫଟୋଗ୍ରାଫ ଗ୍ରହଣ ବେଳେ ଗଣନାକାରୀମାନେ ଉପସ୍ଥିତ ରହି କାର୍ଯ୍ୟଟିକୁ ସମ୍ପନ୍ନ କରିବେ ।

୬. ସଂଗୃହୀତ ତଥ୍ୟଗୁଡ଼ିକୁ ବ୍ୟବହାର କରି ଭାରତର ସ୍ୱତନ୍ତ୍ର ପରିଚୟପତ୍ର ପ୍ରଦାନକାରୀ କର୍ତ୍ତୃପକ୍ଷ (WIDAI) ଚିହ୍ନଟକରଣ ଅଧିକାରୀ ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର (NPR) କିମ୍ବା କମ୍ପ୍ୟୁଟର ସାହାଯ୍ୟରେ ପ୍ରସ୍ତୁତି ହେଉଥିବା ଭାରତୀୟ ନାଗରିକ ଜାତୀୟ ରେଜିଷ୍ଟର ଭିତ୍ତିରେ ଗୋଟିଏ ଲେଖାଏଁ ସ୍ୱତନ୍ତ୍ର ଚିହ୍ନଟ ସଂଖ୍ୟା ବଣ୍ଟନ କରିବେ ।

୭. ଭାରତର ଇଉନିକ୍ ଆଇଡେଣ୍ଟିଫିକେସନ ଅଥରିଟି (UIDAI) ଦେଶର ପ୍ରତ୍ୟେକ ଅଧିବାସୀଙ୍କ ସ୍ୱତନ୍ତ୍ର ଚିହ୍ନଟ ସଂଖ୍ୟା ଥିବା ଗୋଟିଏ କାର୍ଡ (ଏକ ସ୍ମାର୍ଟ କାର୍ଡ ସଦୃଶ) ଯେଉଁଥିରେ ନାଗରିକଙ୍କ ନାମ, ଫଟୋ, ପୁରୁଷ ବା ସ୍ତ୍ରୀ, ଜନ୍ମ ଏବଂ ପରିବାରର ସବିଶେଷ ବିବରଣୀ ଥିବା ଗୋଟିଏ ପରିଚୟପତ୍ର ଦେବେ ।

୮. ଏହା ସ୍ପଷ୍ଟ କରି ଦିଆଯାଇଛି ଯେ, ସ୍ୱତନ୍ତ୍ର ପରିଚୟପତ୍ର ଥିଲେ ମଧ୍ୟ ଏହା ନାଗରିକତ୍ୱର ଏକ ଲିଖିତ ପ୍ରତିଶ୍ରୁତି ନୁହେଁ ।

୯. ଗଣନାକାରୀଙ୍କୁ ଉପଦେଶ ଦିଆଯାଇଥିଲା ଯେ ସେ ପ୍ରତ୍ୟେକ ପରିବାର ସାକ୍ଷାତ କରିବେ ଏବଂ ସେମାନଙ୍କ ସବିଶେଷ ବିବରଣୀ ଯଥା- ନାମ, ଜନ୍ମତାରିଖ, ପୁରୁଷ ବା ସ୍ତ୍ରୀ, ବର୍ତ୍ତମାନ ଠିକଣା, ସ୍ଥାୟୀ ଠିକଣା, ପିତା, ମାତା, ସ୍ୱାମୀ ବା ସ୍ତ୍ରୀ ଇତ୍ୟାଦିଙ୍କ ନାମ ସଂଗ୍ରହ କରିବେ । ତଥ୍ୟଗୁଡ଼ିକୁ କମ୍ପ୍ୟୁଟରରେ ଲିପିବଦ୍ଧ କରାଯିବ । ଜୈବିକ ପରିସଂଖ୍ୟାନ ଯଥା ଫଟୋଚିତ୍ର, ଆଙ୍ଗୁଳିଛାପ ଏବଂ ଅନ୍ୟାନ୍ୟ ତଥ୍ୟାବଳୀ ପ୍ରତ୍ୟେକ ୧୫ବର୍ଷ ଏବଂ ତଦୂର୍ଦ୍ଧ୍ୱ ବ୍ୟକ୍ତିଙ୍କ ପାଇଁ ଗ୍ରହଣ କରାଯିବ । ୧୫ବର୍ଷରୁ କମ୍ ବ୍ୟକ୍ତିମାନଙ୍କ ପାଇଁ ସ୍ୱତନ୍ତ୍ର ଚିହ୍ନଟ ସଂଖ୍ୟା ସେମାନଙ୍କର ମାତା-ପିତା ଏବଂ ଅଭିଭାବକମାନଙ୍କ ସହିତ ସଂପୃକ୍ତ ରହିବ ।

୧୦. ଗଣନାକାରୀ ଘରକୁ ଘର ଯାଇ ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର ପାଇଁ ତଫସିଲଗୁଡ଼ିକରେ ପୂରଣ କରିଥିବା ତଥ୍ୟଗୁଡ଼ିକୁ କମ୍ପ୍ୟୁଟର ସାହାଯ୍ୟରେ ସ୍କାନିଂ (Scanning) ଓ ଡିଜିଟାଇଜ୍ଡ (Digitized) କରାଯିବ । ଏହା ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର ପ୍ରସ୍ତୁତିର ଏକ କାର୍ଯ୍ୟ ପ୍ରଣାଳୀ ରୂପେ ପରିଗଣିତ । ସାଧାରଣ ବାସିନ୍ଦାଙ୍କ ସ୍ଥାନୀୟ ରେଜିଷ୍ଟର ପ୍ରକାଶ କରିବା, ରେଜିଷ୍ଟ୍ରାରଙ୍କ ଦ୍ୱାରା ଆପତ୍ତି ଅଭିଯୋଗଗୁଡ଼ିକୁ ଫୈସଲା କରିବା ଜୈବିକ ପରିସଂଖ୍ୟାନ (Biometric) ଫଟୋ ଗ୍ରହଣ ପାଇଁ ପ୍ରଥମ ପର୍ଯ୍ୟାୟ ଏବଂ ଦ୍ୱିତୀୟ ପର୍ଯ୍ୟାୟ ଅର୍ଥାତ୍ ସବିଶେଷରେ ଜୈବିକ ପରିସଂଖ୍ୟାନ ଏବଂ ଫଟୋଗ୍ରହଣ କରାଯିବ ।

୧୧. ତଥ୍ୟଗୁଡ଼ିକର ସତ୍ୟତା ପ୍ରତିପାଦିତ ହେବାପରେ ସବିଶେଷ ବିବରଣୀଗୁଡ଼ିକୁ ଭାରତରେ ସ୍ୱତନ୍ତ୍ର ପରିଚୟପତ୍ର ପ୍ରଦାନକାରୀ କର୍ତ୍ତୃପକ୍ଷଙ୍କ ନିକଟକୁ ପଠାଯିବ ଏବଂ ସେ ସେଗୁଡ଼ିକୁ ଅନ୍ୟତ୍ର ନକଲ ହୋଇପାରିବା ପ୍ରକ୍ରିୟାକୁ ପ୍ରତିବନ୍ଧିତ କରି ଏକ ସ୍ୱତନ୍ତ୍ର ଚିହ୍ନଟ ସଂଖ୍ୟା ପ୍ରଦାନ କରିବେ ।

୧୨. ଜୈବିକ ପରିସଂଖ୍ୟାନ (Biometic)ଗୁଡ଼ିକ ମିଳାଇଲା ବେଳେ ଦ୍ୱିତୀୟ ନକଲଗୁଡ଼ିକୁ ନଷ୍ଟ କରିଦିଆଯିବ । ଏବଂ ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ଏକ ସ୍ୱତନ୍ତ୍ର ଚିହ୍ନଟ ସଂଖ୍ୟା ପ୍ରସ୍ତୁତ କରାଯିବ ।

୧୩. ସ୍ୱତନ୍ତ୍ର ଚିହ୍ନଟ ସଂଖ୍ୟା ସହିତ ମୂଳତଥ୍ୟ (Data base)ଗୁଡ଼ିକୁ ଭାରତର ରେଜିଷ୍ଟ୍ରାର ଜେନେରାଲ ଏବଂ ଜନଗଣନା କମିଶନରଙ୍କ ନିକଟକୁ ଫେରସ୍ତ କରାଯିବ ଏବଂ ଏହାଦ୍ୱାରା ରାଷ୍ଟ୍ରୀୟ ଲୋକସଂଖ୍ୟା ରେଜିଷ୍ଟର ପ୍ରସ୍ତୁତ ହୋଇପାରିବ ।

୧୪. ଭାରତର ରେଜିଷ୍ଟ୍ରାର ଜେନେରାଲ ଏବଂ ଜନଗଣନା କମିଶନରଙ୍କ ଦ୍ୱାରା ପ୍ରତ୍ୟେକ ସାଧାରଣ ବାସିନ୍ଦାଙ୍କୁ ପର୍ଯ୍ୟାୟକ୍ରମେ ଜାତୀୟ ପରିଚୟପତ୍ର ପ୍ରଦାନ କରାଯିବ । ଉପକୂଳବର୍ତ୍ତୀ ଗ୍ରାମଗୁଡ଼ିକରେ ପ୍ରଥମେ ଏବଂ ଉପକୂଳବର୍ତ୍ତୀ ସହରଗୁଡ଼ିକରେ ପରେ ଏହି ପରିଚୟପତ୍ରଗୁଡ଼ିକ ଦିଆଯିବ ।

୧୫. ଏହି କାର୍ଯ୍ୟକ୍ରମର ମୁଖ୍ୟ ପ୍ରତିବନ୍ଧକଗୁଡ଼ିକ ହେଲା ସମସ୍ତ ଅଞ୍ଚଳରେ କାର୍ଯ୍ୟଟି ସମ୍ପୂର୍ଣ୍ଣ ଭାବେ ସମ୍ପାଦନ କରିବା, ସଠିକ ତଥ୍ୟ, ସମୟ ସୀମା ମଧ୍ୟରେ କାର୍ଯ୍ୟଟି ସମ୍ପୂର୍ଣ୍ଣ କରିବା, କଷ୍ଟସାଧ୍ୟ ଅଞ୍ଚଳ ଏବଂ ଲୋକମାନଙ୍କ ପାଖରୁ ତଥ୍ୟ ସଂଗ୍ରହ କରିବା । ବିଶେଷ ଅଞ୍ଚଳ ଯଥା ସୈନ୍ୟବାହିନୀ ଏବଂ ତାଦୃଶ ସଂସ୍ଥାରେ କାର୍ଯ୍ୟ କରୁଥିବା ବ୍ୟକ୍ତିମାନଙ୍କ ପାଖରୁ ତଥ୍ୟ ସଂଗ୍ରହ ବେଳେ ସତର୍କ ଏବଂ ଯତ୍ନବାନ ହେବା ଆବଶ୍ୟକ । ଏହି ପ୍ରତିବନ୍ଧକଗୁଡ଼ିକୁ ସମ୍ମୁଖୀନ ହେବା ପାଇଁ ପ୍ରଚାର ଏବଂ ସଚେତନତା ସୃଷ୍ଟି ହିଁ ଏକମାତ୍ର ପନ୍ଥା ।

୧୬. ବ୍ୟକ୍ତିମାନଙ୍କ ସମ୍ବନ୍ଧରେ ସଂଗୃହିତ ତଥ୍ୟଗୁଡ଼ିକ ସଂପୂର୍ଣ୍ଣଭାବେ ଗୋପନୀୟ ରଖାଯାଏ । ବାସ୍ତବରେ ଏହି ବ୍ୟକ୍ତିଗତ ତଥ୍ୟଗୁଡ଼ିକ ଆଇନ-ଅଦାଲତରେ ଗ୍ରହଣଯୋଗ୍ୟ ନୁହେଁ । ଜନଗଣନାର ପ୍ରାଥମିକ ଫଳାଫଳ ୨୦୧୧ ମସିହାର ମାର୍ଚ୍ଚ ୨୫ରେ ପ୍ରକାଶିତ ହେବ ବୋଲି ଆଶା କରାଯାଏ ।

୧୭. ଏ ବିଷୟରେ ବେସରକାରୀ ସଂସ୍ଥାଗୁଡ଼ିକର ସହାୟତା ଲୋଡ଼ା ଯାଇଛି । ବିଭିନ୍ନ ବେସରକାରୀ ସଂସ୍ଥାର ବରିଷ୍ଠ ସଦସ୍ୟମାନଙ୍କୁ ମନୋନୀତ କରାଯାଇଛି । ଯାହାଦ୍ୱାରା ବିଭିନ୍ନ ସ୍ତରରେ ପ୍ରଶିକ୍ଷଣ ଦେବା ଏବଂ ତଥ୍ୟ ସଂଗ୍ରହରେ ସାହାଯ୍ୟ ମିଳିପାରିବ ।

୧୮. ୧୯୩୧ ମସିହା ପରଠାରୁ ଅର୍ଥାତ୍ ଆଠ ଦଶନ୍ଧି ପରେ ଏକ ସ୍ୱତନ୍ତ୍ର ପର୍ଯ୍ୟାୟ ଜାତିଭିତ୍ତିକ ଜନଗଣନା ଅନୁଷ୍ଠିତ ହୋଇପାରେ ।

୧୯. ଜନଗଣନା କାର୍ଯ୍ୟ ସମ୍ପାଦନ ନିମନ୍ତେ ପ୍ରଶାସନିକ ସୋପାନଗୁଡ଼ିକ ହେଲା - ଭାରତର ରେଜିଷ୍ଟ୍ରାର ଜେନେରାଲ ଏବଂ ଜନଗଣନା କମିଶନର, ଜନଗଣନା ନିର୍ଦ୍ଦେଶକ-ରାଜ୍ୟର ପ୍ରଧାନ ଜନଗଣନା ଅଧିକାରୀ, ଜିଲ୍ଲାପାଳ - ଜିଲ୍ଲାର ପ୍ରଧାନ ଜନଗଣନା ଅଧିକାରୀ, ନିଗମଗୁଡ଼ିକର କମିଶନର, ତହସିଲଦାର - ଚାର୍ଜ ଅଧିକାରୀ, ସୁପରଭାଇଜର ଏବଂ ଗଣନାକାରୀ ।

୨୦. ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର ପ୍ରସ୍ତୁତି କାର୍ଯ୍ୟର ସଂଚାଳନ ନିମନ୍ତେ ପ୍ରଶାସନିକ ସ୍ତରଗୁଡ଼ିକ ହେଲା -

- ଜାତୀୟ ପଞ୍ଜିକରଣ କର୍ତ୍ତୃପକ୍ଷ
- ଜନଗଣନା ନିର୍ଦ୍ଦେଶାଳୟ (ପ୍ରତ୍ୟେକ ରାଜ୍ୟ)
- ଜିଲ୍ଲା ମାଜିଷ୍ଟ୍ରେଟ (ପ୍ରତ୍ୟେକ ରାଜସ୍ୱ ଜିଲ୍ଲା ପାଇଁ)
- ଉପଜିଲ୍ଲା ମାଜିଷ୍ଟ୍ରେଟ / ସ୍ଥାନୀୟ ରାଜସ୍ୱ ଅଧିକାରୀ ପ୍ରତ୍ୟେକ ରାଜ୍ୟରେ ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର ପାଇଁ ରାଜ୍ୟ ସମନ୍ୱୟକାରୀ ଅଧିକାରୀ କେନ୍ଦ୍ର ଏବଂ ରାଜ୍ୟ ସହିତ ସମନ୍ୱୟ ରକ୍ଷା କରିବେ ।

ପ୍ରାସଙ୍ଗିକ ନିୟମଗୁଡ଼ିକ ସହିତ ଐକ୍ୟ ରକ୍ଷାକରି ସରକାରଙ୍କ ସିଦ୍ଧାନ୍ତ ଅନୁସାରେ ଏହି କାର୍ଯ୍ୟକ୍ରମରେ ସଂଶ୍ଳିଷ୍ଟ ଅଧିକାରୀମାନେ ଯେଉଁ ପଦବୀ ବହନ କରିବେ ସେଗୁଡ଼ିକ ହେଲା-

- ରେଜିଷ୍ଟ୍ରାର ଜେନେରାଲ - ନାଗରିକ ପଞ୍ଜିକରଣ
- ରାଜ୍ୟ ନିର୍ଦ୍ଦେଶକ - ନାଗରିକ ପଞ୍ଜିକରଣ
- ଜିଲ୍ଲା ରେଜିଷ୍ଟ୍ରାର - ନାଗରିକ ପଞ୍ଜିକରଣ
- ଉପଜିଲ୍ଲା ରେଜିଷ୍ଟ୍ରାର - ନାଗରିକ ପଞ୍ଜିକରଣ
- ସ୍ଥାନୀୟ ରେଜିଷ୍ଟ୍ରାର - ନାଗରିକ ପଞ୍ଜିକରଣ

୨୧. ଜନଗଣନା ଏକ ପରିସଂଖ୍ୟାନଭିତ୍ତିକ କାର୍ଯ୍ୟକ୍ରମ ହୋଇଥିବାରୁ ଏହା କେବଳ ମୁଣ୍ଡ ଗଣତିରେ ପର୍ଯ୍ୟବସିତ କିନ୍ତୁ ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟରରେ ବ୍ୟକ୍ତିଗତ ବିବରଣୀ ସଂଗୃହିତ ହୋଇଥାଏ ।

୨୨. ତଥ୍ୟ ସଂଗ୍ରହ କରିବାରେ, ମାନବ ସମ୍ବଳ ବିନିଯୋଗରେ ଏବଂ ଖର୍ଚ୍ଚ ବହୁଳତା ଦିଗରେ ଏହି କାର୍ଯ୍ୟକ୍ରମ ପୃଥିବୀରେ ସର୍ବ ବୃହତ କାର୍ଯ୍ୟ ରୂପେ ପରିଗଣିତ ।

୨୩. ୨୦୧୧ ମସିହା ଜନଗଣନାର ସ୍ଲୋଗାନ ହେଲା "ଆମର ଜନଗଣନା ଆମର ଭବିଷ୍ୟତ ।"

ଓଡିଶା, ଭାରତରେ ଏକ ଅଂଶ ହୋଇଥିବାରୁ ଭାରତ ପାଇଁ ଅନୁଷ୍ଠିତ ହେଉଥିବା କାର୍ଯ୍ୟକ୍ରମଗୁଡ଼ିକ ମଧ୍ୟ ଓଡ଼ିଶା ପାଇଁ ପ୍ରଯୁଜ୍ୟ । କାର୍ଯ୍ୟର ବିଶାଳତା ଯେ କେତେ ତାହା ପ୍ରସ୍ତୁତ ହୋଇଥିବା ନିମ୍ନ ଲିଖିତ ଆକଳନରୁ ସ୍ପଷ୍ଟ ରୂପେ ବୁଝାପଡ଼ିବ ।

୨୪. ୨୦୧୧ ଜନଗଣନା ପାଇଁ ଗଣନାକାରୀଙ୍କୁ ୬୪୦ଟି ଜିଲ୍ଲା, ୫୭୬୭ଟି ତହସିଲ, ୭,୭୪୨ଟି ସହର ଏବଂ ଆନୁମାନିକ ୬ ଲକ୍ଷ ଗ୍ରାମରେ ବ୍ୟାପୃତ ଥିବା ୨୪ କୋଟି ପରିବାରଗୁଡ଼ିକୁ ଗଣନା କରିବାକୁ ପଡିବ ।

୨୫. ୬,୪୦୦ ଜନଗଣନା ଫର୍ମ ଏବଂ ୫ଲକ୍ଷ ଉପଦେଶାବଳୀ ପୁସ୍ତିକା ଛାପିବା ପାଇଁ ପ୍ରାୟ ୧୨,୦୦୦ ମେଟ୍ରିକଟନ କାଗଜ ଆବଶ୍ୟକ ହେବ ।

୨୬. ସମଗ୍ର ଦେଶରେ କାର୍ଯ୍ୟକ୍ରମଟିକୁ ସମ୍ପାଦନ କରିବା ନିମନ୍ତେ ମୋଟ ୫,୭୦୦ କୋଟି ଟଙ୍କା ଖର୍ଚ୍ଚ ହେବ । ଜନଗଣନାର ସମସ୍ତ କାର୍ଯ୍ୟ ପାଇଁ ୨,୨୦୯ କୋଟି ଏବଂ ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର ପ୍ରସ୍ତୁତି ପାଇଁ ୩,୫୩୯.୨୪ କୋଟି ଟଙ୍କା ।

ଅଧିକନ୍ତୁ ଇଂରାଜୀରେ ଛପା ହେଉଥିବା ତଫସିଲ ସହିତ ଆମ ରାଜ୍ୟ ପାଇଁ ଓଡ଼ିଆ ଭାଷାରେ ଅନୁବାଦ ହୋଇଥିବା

ଜନଗଣନା ଓ ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର ପାଇଁ ପ୍ରଶିକ୍ଷଣ ଓ କାର୍ଯ୍ୟ କ୍ଷେତ୍ରରେ ଆବଶ୍ୟକ ହେଉଥିବା ଉପଦେଶାବଳୀ ପୁସ୍ତିକା ପାଇଁ ଖର୍ଚ୍ଚ ଓ କାର୍ଯ୍ୟ ଭାର ଅଧିକ ଭାରତର ଖର୍ଚ୍ଚ ଅଟକଳ ସହିତ ତୁଳନାକରି ଓଡିଶାପାଇଁ । ତେଣୁ କାର୍ଯ୍ୟର ଗୁରୁତ୍ୱ ଉପଲବ୍ଧି କରିବା ପାଇଁ ନିମ୍ନରେ ଆକଳନଗୁଡିକ ଦିଆଗଲା -

ଉପରଲିଖିତ ତଥ୍ୟଗୁଡିକରୁ ଏହା ସ୍ପଷ୍ଟ ଜଣାପଡୁଛି ଯେ ୨୦୧୧ ମସିହାର ଜନଗଣନା ଦେଶର ସର୍ବବୃହତ ପ୍ରଶାସନିକ ପ୍ରଚେଷ୍ଟା । ଏହି କାର୍ଯ୍ୟକ୍ରମର ସଫଳ ରୂପାୟନ ଦେଶ ପାଇଁ ଏକ ଆହ୍ୱାନ ଏବଂ ବହୁ ବାଧାବିଘ୍ନ ଅତିକ୍ରମ କରି ଏହାକୁ ସମୟସୀମା ମଧ୍ୟରେ ସମ୍ପାଦନ କରିବାକୁ ହେବ । ଏହି କାର୍ଯ୍ୟକ୍ରମର ବିଭିନ୍ନ ପର୍ଯ୍ୟାୟ ଏବଂ ସ୍ତରରେ ସଂପୃକ୍ତ ଥିବା ଅଧିକାରୀମାନଙ୍କ ସହଯୋଗ ଏବଂ ଉତ୍ସର୍ଗୀକୃତ ମନୋଭାବ ଦ୍ୱାରା ଏହା ସଫଳ ହୋଇପାରିବ । ଭାରତରେ ଜନଗଣନା ଏକ ନିୟମିତ ବ୍ୟବଧାନରେ ଅନୁଷ୍ଠିତ ହୁଏ । ଏହାର ଲକ୍ଷ୍ୟ ହେଲା ସମଗ୍ର ଦେଶର ଲୋକମାନଙ୍କର ଅପେକ୍ଷାକୃତ ସ୍ଥାୟୀ ସାମାଜିକ ଏବଂ ଆର୍ଥିକ ବିବରଣୀଗୁଡିକୁ ସଂଗ୍ରହ କରି ବିସ୍ତୃତ ଭାବେ ପ୍ରକାଶ କରିବା । ଏହା ଆଶା କରାଯାଏ ଯେ ଓଡିଶା ରାଜ୍ୟର ଉନ୍ନତି ଯୋଜନା ପ୍ରଣୟନ କରିବା ପାଇଁ ଏହି ତଥ୍ୟଗୁଡିକୁ ବହୁଳଭାବେ ଉପଯୋଗ କରାଯାଇପାରିବ । ଏହି ରାଜ୍ୟରେ ତଥ୍ୟଗୁଡିକୁ ବିସ୍ତାରିତ ଭାବେ ଗବେଷଣା କରିବା ଏବଂ କାର୍ଯ୍ୟ କ୍ଷେତ୍ରରେ ପ୍ରୟୋଗ କରିବା ପାଇଁ ଅଧିକ ସୁଯୋଗ ଅଛି । ପ୍ରଥମଟି ସଂକ୍ଷେପରେ ଦୁଇଟି ପଂକ୍ତି ଉଦ୍ଧାର କରାଯାଇ ପାରେ କାର୍ଯ୍ୟ କ୍ଷେତ୍ରରେ ଗଣନା କରୁଥିବା କର୍ମୀମାନଙ୍କ ପାଇଁ ଏବଂ ଅନ୍ୟଟି ଗଣନାଭୁକ୍ତ ହେଉଥିବା ବ୍ୟକ୍ତି ପାଇଁ ଉତ୍ସର୍ଗୀକୃତ । ସମୟୋପଯୋଗୀ ପ୍ରୋତ୍ସାହନ ଦ୍ୱାରା ହିଁ ଏହା ସାଧାରଣ ପୁରୁଷ ଏବଂ ସ୍ତ୍ରୀ ଅଲୌକିକ କାର୍ଯ୍ୟ ସମ୍ପାଦନ କରି ପଦବାଚ୍ୟ ହୁଅନ୍ତି ।

- 'ଜନଗଣନା ଅଧିକାରୀଙ୍କ ପାଇଁ ଏକ ବାଣୀ ।'

ମୁଁ ଏକା, ତଥାପି ମୁଁ ଏକା, ମୁଁ ଏକୁଟିଆ ସବୁକିଛି କରିପାରିବି ନାହିଁ, କିନ୍ତୁ ତଥାପି ମୁଁ କିଛି କରିପାରିବି ଏବଂ ଯେହେତୁ ମୁଁ ସବୁକିଛି କରିପାରିବି ନାହିଁ । ମୁଁ ଯେଉଁ କାର୍ଯ୍ୟ କରିବାକୁ ସମର୍ଥ ସେହି କାର୍ଯ୍ୟଟିକୁ ପ୍ରତ୍ୟାଖାନ କରିପାରିବି ନାହିଁ ।

-ହେଲେନ କେଲର

ତେଣୁ ଜନଗଣନା ସଂନ୍ଦର୍ଭରେ କହିବାକୁ ଗଲେ - "ପ୍ରତ୍ୟେକଙ୍କର ମୂଲ୍ୟ ଅଛି ।"

*ଆଇ.ଏ.ଏସ., ନିର୍ଦ୍ଦେଶକ*
*ଜନଗଣନା ନିର୍ଦ୍ଦେଶାଳୟ, ଓଡିଶା*
*ଭୁବନେଶ୍ୱର*



ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କୁ ଜନଗଣନା ନିର୍ଦ୍ଦେଶକ ଶ୍ରୀ ବିଷ୍ଣୁପଦ ସେଠୀ ଏକ ସ୍ମୃତି ଫଳକ ପ୍ରଦାନ କରୁଛନ୍ତି ।

# ଭାରତର ଜନଗଣନାର ସଂକ୍ଷିପ୍ତ ଇତିହାସ

**ସ**ବୁଠୁ ପୁରୁଣା ସାହିତ୍ୟ 'ଋଗ୍‌ବେଦ'ରେ ଏହା ସ୍ପଷ୍ଟ ଭାବେ କୁହାଯାଇଛି ଯେ ଜନସଂଖ୍ୟା ନାମମାତ୍ର ଥିଲା ଏବଂ ବିସ୍ତୀର୍ଣ୍ଣ ଅଞ୍ଚଳରେ ବ୍ୟାପୃତ ଥିଲା ଛୋଟ ଛୋଟ ଗ୍ରାମରେ । ବ୍ରାହ୍ମଣ ସାହିତ୍ୟ, ୮୦୦-୬୦୦ ଖ୍ରୀଷ୍ଟପୂର୍ବ, ବିଦିତ କରେ କେତେକ ଗ୍ରାମ, ସହର ଏବଂ ରାଜଧାନୀରେ ଉନ୍ନୀତ ହୋଇ ସହରର ଜୀବନ ପ୍ରଣାଳୀକୁ ଦୃଷ୍ଟିଗୋଚର କରାଉଥିଲା ।




ବୌଦ୍ଧ ଧର୍ମର ସାହିତ୍ୟ ସୂଚାଇ ଦିଏ, ଖ୍ରୀଷ୍ଟପୂର୍ବ ସପ୍ତମ ଏବଂ ଚତୁର୍ଥ ଶତାବ୍ଦୀ ମଧ୍ୟରେ, ଭାରତର ଅର୍ଥନୀତି ମଧ୍ୟ ବିଶେଷ ଭାବରେ ଇଉରୋପ ମହାଦେଶ ସହ ତୁଳନାତ୍ମକ ଥିଲା । ଶିଳ୍ପ ବିଦ୍ୟା ଓ ବାଣିଜ୍ୟ ଅଧିକ ଉନ୍ନତ ହୋଇ ଉଠୁଥିଲା ଏବଂ ଅତ୍ୟନ୍ତ ସୁସଂହତ ଥିଲା । ଗୋଟିଏ ସାଧାରଣ ସହରରେ ୩୦ରୁ ୧୦୦୦ ପରିବାର ବାସ କରୁଥିଲେ ଏବଂ ଉତ୍ତର ଭାରତରେ ୨୦ଟି ସେଭଳି ସହର ଥିଲା । ସଘନ ଜନସଂଖ୍ୟା ରହିଥିବାର ପୁଷ୍ଟି ହୁଏ ଆଲେକ୍‌ଜାଣ୍ଡରଙ୍କ ସୈନ୍ୟମାନଙ୍କ ଦ୍ୱାରା ଯେଉଁମାନେ ଖ୍ରୀଷ୍ଟପୂର୍ବ ୩୨୭-୨୬ ମସିହାରେ ଆକ୍ରମଣ କରିଥିଲେ । ଚନ୍ଦ୍ରଗୁପ୍ତ (ଖ୍ରୀଷ୍ଟପୂର୍ବ ୩୨୧-୨୯୭)ଙ୍କ ରେକର୍ଡରୁ ଜଣାପଡ଼େ ଯେ, ତାଙ୍କର ୭୦୦,୦୦୦ ସଂଖ୍ୟା ବିଶିଷ୍ଟ ଏକ ସୈନ୍ୟମଣ୍ଡଳୀ ସବୁବେଳେ ରହିଥିଲା, ଯାହାକି ନିଶ୍ଚୟ ସେମାନଙ୍କ ପରିପାଳନ ପାଇଁ ଏକ ବଡ଼ ଜନସଂଖ୍ୟାର ଆବଶ୍ୟକ ହୋଇଥିବ । ଅଶୋକ (୨୭୪-୨୩୬ ଖ୍ରୀଷ୍ଟପୂର୍ବ)ଙ୍କ ସମୟରେ, ଭାରତର ସଭ୍ୟତା ଅତ୍ୟୁଚ୍ଚ ଶିଖରକୁ ଯାଇଥିଲା ଏକ କାର୍ଯ୍ୟ ଦକ୍ଷ ପ୍ରଶାସନ ଉପରେ ଭିତ୍ତିକରି, ଲିଖିତ ଆଜ୍ଞା ବ୍ୟବହାର କରି ଏବଂ ବ୍ୟାପକ ବାଣିଜ୍ୟ ଇତ୍ୟାଦି ଦ୍ୱାରା ।

ଉପରୋକ୍ତ ତଥ୍ୟଗୁଡ଼ିକୁ ନିଃସନ୍ଦେହ ଭାବେ ଅନୁମାନ କରାଯାଇପାରେ ଯେ, ଖ୍ରୀଷ୍ଟିୟ ସମୟ ପୂର୍ବରୁ, ଭାରତରେ ଏକ ବିପୁଳ ଜନସଂଖ୍ୟା ଥିଲା । ଜନସଂଖ୍ୟା ସଂପର୍କୀୟ ତଥ୍ୟ ସଂଗ୍ରହ ପାଇଁ ବହୁ ପୂରାକାଳରୁ ପ୍ରଚେଷ୍ଟା ହୋଇଥିଲା । ପ୍ରସିଦ୍ଧ 'ଅର୍ଥଶାସ୍ତ୍ର', ରାଜକାର୍ଯ୍ୟର ନୀତି, ଯାହାକି ରାଜନୈତିକ ପ୍ରଶାସନର ଜଣେ ଯୋଗଜନ୍ମାଙ୍କ ଦ୍ୱାରା ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ମୌର୍ଯ୍ୟ ଶାସନ କାଳରେ ରଚିତ ହୋଇଥିଲା । ଜନସଂଖ୍ୟା ପରିସଂଖ୍ୟାନର ସଂଗ୍ରହ ପାଇଁ ପ୍ରାବଧାନ ରଖିଥିଲା ରାଜ୍ୟର କର ଅସୁଲ ପାଇଁ ନୀତି ଅନୁସାରେ । ସେଥିରେ ଜନସଂଖ୍ୟା, ଅର୍ଥନୈତିକ ଏବଂ କୃଷି ସଂପର୍କୀୟ ଗଣନା ପାଇଁ ପ୍ରଣାଳୀର ବିସ୍ତୃତ ନିର୍ଦ୍ଦେଶାବଳୀ ରହିଥିଲା । ମୋଗଲ ସମୟରେ ବ୍ୟାପକ ନଥିର ବ୍ୟବହାର କରାଯାଇଥିଲା, ଜମି, ଉତ୍ପାଦନ, ଜନସଂଖ୍ୟା ଦୁର୍ଭିକ୍ଷ ଇତ୍ୟାଦି ପାଇଁ । ଆକବରଙ୍କ ସମୟ ଭାରତର ଇତିହାସରେ ଏକ ଉଜ୍ଜ୍ୱଳ ସମୟ । ସେହି ସମୟର ପ୍ରଶାସନିକ ରିପୋର୍ଟ ଆଇନ୍ ଏ ଆକ୍‌ବରୀରେ ରହିଥିଲା, ଜନସଂଖ୍ୟା ସଂପର୍କିତ ବହୁମୁଖୀ ତଥ୍ୟ, ଶିଳ୍ପ, ସଂପଦ ଏବଂ ଅନେକ ଅନ୍ୟ ଗୁଣାତ୍ମକ ତଥ୍ୟ ରହିଥିଲା ।

ବ୍ରିଟିଶ ସାମ୍ରାଜ୍ୟ କାଳରେ, ଷ୍ଟାଟିଷ୍ଟିକାଲ୍ ଡେସ୍ପାଚ୍ ନଂ-୨, ୨୩ ଜୁଲାଇର ଘରୋଇ ବିଭାଗରୁ ଆସିଥିଲା ୧୮୫୬ ମସିହାରେ ଭାରତ ସରକାରଙ୍କ ବିଚାର ପାଇଁ ଯଦ୍ଦ୍ୱାରା

୧୮୬୧ ମସିହାରେ ଭାରତର ଜନସଂଖ୍ୟା ଗଣନା କରିବା ପ୍ରସ୍ତାବ ଥିଲା । ତେବେ ବିଭିନ୍ନ ବିଦ୍ରୋହ ଚାଲିଥିବାରୁ ୧୮୫୯ ମସିହାରେ ସ୍ଥଗିତ ରଖାଗଲା । ତେବେ ଉତ୍ତର-ପଶ୍ଚିମ ପ୍ରଦେଶରେ ୧୦ ଜାନୁଆରୀ, ୧୮୬୫ରେ ଏକ ଜନଗଣନା କରାଯାଇଥିଲା W.C. Plowden ଙ୍କ ଦ୍ୱାରା ଯେଉଁଥିରେ ପ୍ରକୃତ ଘରକୁ ଘର ବୁଲି ଜନଗଣନା ସାରା ପ୍ରଦେଶରେ ଗୋଟିଏ ଦିନରେ ହେବା ପାଇଁ ନୀତି ନିର୍ଦ୍ଧାରଣ କରାଯାଇଥିଲା । ଏଥିରେ ଲିଂଗଭେଦ, ମୁଖ୍ୟ ଧର୍ମବିଶ୍ୱାସ ଭେଦ ଏବଂ ଜନଗଣଙ୍କର କୃଷି ବା ଅଣକୃଷି ଜୀବିକା ଭେଦ ଏବଂ ଅନ୍ୟାନ୍ୟ ବିଭିନ୍ନ ଜୀବିକା ଓ ଜାତି ଭେଦରେ ତଥ୍ୟ ସଂଗ୍ରହ କରାଯାଇଥିଲା । ସେ ଜନଗଣନାରେ ମଧ୍ୟ ବିଭିନ୍ନ ଜାତିଙ୍କ ବିଭିନ୍ନ ଅଞ୍ଚଳରେ ବନ୍ଦୋବସ୍ତ, ତାଙ୍କର ସୃଷ୍ଟି ଏବଂ ମୂଳ ଜାତିଠାରୁ କିପରି ବିଚ୍ଛିନ୍ନ ହୋଇଛନ୍ତି, ସେ ସଂପର୍କରେ ତଥ୍ୟ ସଂଗ୍ରହ କରାଯାଇଥିଲା । ଏହା ମଧ୍ୟ ପ୍ରଥମ ଜନଗଣନା ଥିଲା ଯେଉଁଥିରେ ପ୍ରଥମଥର ପାଇଁ ବୟସ ସଂପର୍କୀୟ ବିଶଦ ବିଭାଗ କରାଯାଇଥିଲା । ସେଭଳି ଜନଗଣନା ହୋଇଥିଲା ୧ ନଭେମ୍ବର ୧୮୬୬ ମଧ୍ୟପ୍ରଦେଶରେ ଏବଂ ତା' ପରେ ପରେ କେରଳରେ ୧୮୬୭ ମସିହାରେ । ଅନ୍ୟାନ୍ୟ ପ୍ରଦେଶ ସହରରେ ମଧ୍ୟ ବିଭିନ୍ନ ସମୟରେ ଜନଗଣନା କରାଯାଇଥିଲା ।

ପରିସଂଖ୍ୟାନ ସଂସ୍ଥା ଏହି ଦଶନ୍ଧିର ଶେଷବେଳକୁ ଦ୍ରୁତଗତିରେ ଆଗେଇ ଯାଇଥିଲା ଲର୍ଡମେୟୋ, ଗଭର୍ଣ୍ଣର ଜେନେରାଲଙ୍କ ନେତୃତ୍ୱରେ ଡବ୍ଲ୍ୟୁ ଡବ୍ଲ୍ୟୁ ହଣ୍ଟର ପରିସଂଖ୍ୟାନ ସର୍ଭେର ଡାଇରେକ୍ଟର ଜେନେରାଲ ଭାବେ ୧୮୬୯ ମସିହାରେ ନିଯୁକ୍ତ ହେଲେ । ଗୋଟିଏ ପରୀକ୍ଷାମୂଳକ ଜନଗଣନା ୧୮୬୯ ମସିହାରେ ବଂଗର ତଳ ପ୍ରଦେଶରେ ସଂଘଟିତ ହୋଇଥିଲା ୧୮୬୯ରେ ଏଚ୍ ବିଭର୍‌ଲେ, ରେଜିଷ୍ଟ୍ରର ଜେନେରାଲଙ୍କ ଦ୍ୱାରା । ୧୮୬୫ ମସିହାରୁ ଭାରତ ସରକାର ଏବଂ ଘରୋଇ ବିଭାଗ ନୀତିଗତ ଭାବେ ଗ୍ରହଣ କରିଥିଲେ ଯେ ୧୮୭୧ ମସିହାରେ ଏକ ସାଧାରଣ ଜନଗଣନା କରାଯିବ । ଜନଗଣନା ତଫସିଲ ଓ ପ୍ରଶ୍ନାବଳୀର ଏକ ଛାଞ୍ଚ ଡବ୍ଲୁ ସି ପ୍ଲୋଭଡେନ୍‌ଙ୍କ ଦ୍ୱାରା ୧୮୬୫ରେ ଧୈର୍ଯ୍ୟ ସହକାରେ ପ୍ରସ୍ତୁତ କରାଯାଇଥିଲା । ୧୮୬୨ରୁ ୧୮୭୨ ମସିହା ମଧ୍ୟରେ ଦେଶରେ ଯେଉଁ ଅଞ୍ଚଳରେ ବି ସମ୍ଭବ ହେଲା, ସେଇଠି ମୁଣ୍ଡ ଗଣତି କରାଯାଇ ଜନଗଣନା କରାଯାଇଥିଲା । ଏହି ସିରିଜରୁ ସାଧାରଣତଃ ୧୮୭୨ର ଜନଗଣନା ରୂପେ ଜଣା, ଏହା କିନ୍ତୁ ଏକ ସମକାଳରେ ସଂଘଟିତ ଯୋଜନା ନଥିଲା ଏବଂ ବ୍ରିଟିଶମାନଙ୍କ ଦ୍ୱାରା ଅଧିକୃତ ବା ନିୟନ୍ତ୍ରିତ ସମସ୍ତ ପ୍ରଦେଶରେ ହୋଇ ନ ଥିଲା । ଯଦିଓ ସମାନ ତଫସିଲ ବ୍ୟବହାର କରାଯାଇଥିଲା ଏହା କେନ୍ଦ୍ର ସ୍ତରରୁ ତଦାରଖ, ପରିମିତ ଓ ସଂକଳିତ ହୋଇନଥିଲା । ତେବେ ଏହା ଆଧୁନିକ ଚିନ୍ତାଧାରା ଦ୍ୱାରା ଅନୁପ୍ରାଣିତ ଥିଲା, ଗୋଟିଏ ଶୁଭାରମ୍ଭ କଲା ଏବଂ ସମସ୍ତ ମୂଳ ଜନସାଂଖ୍ୟିକ, ସାମାଜିକ ଏବଂ ଅର୍ଥନୈତିକ ସାରଣୀର ପ୍ରାଥମିକ ତତ୍ତ୍ୱାବଳୀ ବହନ କରୁଥିଲା । ଏହି ପଦକ୍ଷେପ ବଙ୍ଗଳାର ଆଇନ୍ ବହିରେ ଜନ୍ମ ଓ ମୃତ୍ୟୁ ରେଜିଷ୍ଟ୍ରେସନ ୧୮୭୩ ଆଇନର ପ୍ରାରମ୍ଭ ପାଇଁ ପ୍ରେରଣା ଦେଇଥିଲା । ପରବର୍ତ୍ତୀ କାଳରେ ଜନ୍ମ, ମୃତ୍ୟୁ ଏବଂ ବିବାହ ରେଜିଷ୍ଟ୍ରେସନ ଆଇନ ୧୮୮୬ରେ ଆରମ୍ଭ ହେଲା ଯାହା ଆକଳନ ପାଇଁ ତଥ୍ୟ ପ୍ରଦାନ କରିବା ବ୍ୟବସ୍ଥା ସୃଷ୍ଟି କଲା ।

ପ୍ରଥମ ସଂପୂର୍ଣ୍ଣ ଜନଗଣନା ହେଲା ୧୮୮୧ ମସିହାରେ, ଯାହା ଡବ୍ଲୁ.ସି. ପ୍ଲୋଡେନ, ଜନଗଣନା କମିଶନରଙ୍କ ଦ୍ୱାରା ସଂଗଠିତ ହୋଇଥିଲା । ସେହି ଜନଗଣନା ସମାନ ଭାବରେ ସାରା ଭାରତରେ କରାଯାଇ, ସଂପୂର୍ଣ୍ଣ ଓ ଧାରାବାହିକ ଭାବେ ଜନସାଂଖ୍ୟିକ ରେକର୍ଡ ପ୍ରଦାନ କଲା । ସେଇ ସମୟରୁ ଜନଗଣନା ନିୟମିତ ଭାବେ କରାଯାଉଛି ପ୍ରତି ଦଶ ବର୍ଷରେ ଥରେ । ଏହି ଜନଗଣନାଗୁଡ଼ିକ ଜନସଂଖ୍ୟାର ବିତରଣ, ଘନତ୍ୱ, ଶାରୀରିକ ଦଳ, ଗ୍ରାମ ଓ ସହର ମଧ୍ୟରେ ବିତରଣ, ଗୃହର ଅବସ୍ଥା, ସ୍ଥାନାନ୍ତର, ଜୀବିକା, ବର୍ଣ୍ଣ ପ୍ରକାରରେ ବିତରଣ, ସାକ୍ଷରତା, ଧର୍ମ, ଶାରୀରିକ ବିକଳାଙ୍ଗତା, ଲିଙ୍ଗ ଏବଂ ବେସାମରିକ ଅବସ୍ଥା ଇତ୍ୟାଦି ବିଷୟରେ ବିବରଣୀ ସଂଗୃହୀତ ହୋଇଛି ।

ଭାରତର ଜନଗଣନାର ଜାତି ଓ ଉପଜାତିଙ୍କ ବିଷୟରେ ଅଗ୍ରାଧିକାର ଏବଂ ନୃତାତ୍ତ୍ୱିକ ପଦ୍ଧତିର ସଂଗୋତ୍ର ଭାବେ ବିଭିନ୍ନ ଦଶକରେ ବର୍ଣ୍ଣିତ ହୋଇଛି । ତେବେ ଭାରତର ଜନଗଣନା ତା'ର ପ୍ରକୃତ କାର୍ଯ୍ୟ ଜନସାଂଖ୍ୟିକ ବିଶ୍ଳେଷଣ ପାଇଁ ସୁଯୋଗ ସୃଷ୍ଟି କରିଛି । ଅନ୍ୟ ଏକ ମୁଖ୍ୟ ଚରିତ୍ର ହେଲା, ଏହା କୌଣସି ପରମ୍ପରାବଦ୍ଧ ନୁହେଁ ଏବଂ କୌଣସି ସରକାରୀ ସ୍ତରରେ ଭ୍ରମାତୀତ ବୋଲି ବର୍ଣ୍ଣନାର ଆଶ୍ରିତ ନୁହେ । ଏହା ପ୍ରତ୍ୟେକ ଜନଗଣନାରେ ନୂତନ ତଥ୍ୟାନୁସନ୍ଧାନ କରିଛି ପୂର୍ବ ଜନଗଣନାଗୁଡ଼ିକ ସହ ସୁସଂଗତିର ସୁରକ୍ଷାକରି । ଭାରତର ଜନଗଣନା ବିଶେଷ ଦୃଷ୍ଟି ଦେଇଥାଏ ପରିବର୍ତ୍ତିତ ପରିସ୍ଥିତି ଏବଂ ସରକାରୀ ଆବଶ୍ୟକତାକୁ ଏବଂ ଏଥିସହ ଜନଗଣନାର ସାଂପ୍ରତିକ ଏବଂ ଆଗୁଆ ଆବଶ୍ୟକତା ସହ ତାଳ ଦେଇ ଚାଲିଥାଏ । ସଂକ୍ଷେପରେ କହିବାକୁ ଗଲେ, ଏହା କେବେ ବି ନିଜ କାତ ଦ୍ୱାରା ଭାରା

ଦେଇ ଅଟକି ଯାଇନଥାଏ କିନ୍ତୁ ଦେଶର ସବୁଠୁ ସଫଳ ଏକମାତ୍ର ତଥ୍ୟାଧାର ରୂପେ ପରିଗଣିତ ହୋଇଥାଏ।

ଜନସଂଖ୍ୟା ତଥ୍ୟ ଗୁରୁତ୍ୱ କରି ସରକାର ୧୯୪୪ ମସିହାରେ ଏକ ଜନଗଣନା ପରିସଂଖ୍ୟାନ କମିଟି ଗଠନ କରିଥିଲେ, ଜନସଂଖ୍ୟା ବୃଦ୍ଧି ସଂପର୍କରେ ରହିଥିବା ତଥ୍ୟଗୁଡ଼ିକୁ ପରୀକ୍ଷାନିରୀକ୍ଷା କରି ସରକାରଙ୍କୁ ଉପଦେଶ ଦେବାକୁ। ଏହି କମିଟି ୧୯୪୧ ଜନଗଣନାର ଟେବୁଲରେ ଥିବା ବୟସ ସମ୍ବନ୍ଧୀୟ ପରିସଂଖ୍ୟାନ ସମସ୍ୟା ବିଷୟରେ ବିଶେଷ ଜୋର ଦେଇଥିଲେ। ବିଶ୍ୱଯୁଦ୍ଧ ଦ୍ୱାରା ଏହି କମିଟି ବିଶେଷ କିଛି କରିନପାରି, ଜନ୍ମ ମୃତ୍ୟୁ ହାର ଆକଳନ ପାଇଁ ନମୁନା ପ୍ରଣାଳୀ ଗ୍ରହଣ କରିବାକୁ ପରାମର୍ଶ ଦେଇଥିଲେ। 'ହେଲଥ ସର୍ଭେ' ଏବଂ ଡେଭଲପମେଣ୍ଟ କମିଟି ବା ଭୋର୍ କମିଟି, ଯୁଦ୍ଧୋତ୍ତର ସ୍ୱାସ୍ଥ୍ୟ ସଂପର୍କୀୟ ପ୍ରଗତି ଆକଳନ ପାଇଁ ଗଢ଼ା ଯାଇଥିଲା। ତେବେ ସେମାନେ ଜନସଂଖ୍ୟା କ୍ଷେତ୍ରର ଏକ ସଂପୂର୍ଣ୍ଣ ସମୀକ୍ଷା କରିଥିଲେ । କେତେକ ପରିସଂଖ୍ୟାନ ଗତ ତଥା ଗୁଣାତ୍ମକ ଦୃଷ୍ଟି କୋଣରୁ । ସେହି କମିଟି, କେନ୍ଦ୍ରୀୟ ସ୍ତରରେ ଏକ ରେଜିଷ୍ଟ୍ରାର ଜେନେରାଲ, ଜନ୍ମମୃତ୍ୟୁ ଏବଂ ଜନଗଣନା ପରିସଂଖ୍ୟାନର ନିଯୁକ୍ତି ଏବଂ ରାଜ୍ୟ ସ୍ତରରେ ପରିଦର୍ଶକର ନିଯୁକ୍ତି ପାଇଁ ପରାମର୍ଶ ଦେଇଥିଲା ଜନସଂଖ୍ୟା ପରିସଂଖ୍ୟାନର ଉନ୍ନତିକଳ୍ପେ । ଏକ ମୁଖ୍ୟ ପରାମର୍ଶ ଥିଲା ଜନସଂଖ୍ୟା ସମସ୍ୟାର ନିରନ୍ତର ଅନୁଶୀଳନ। ଜନଗଣନା ଆଇନ୍ ପାସ୍ ହେଲା ୧୯୪୮ ମସିହାରେ । ୧୯୪୯ ମସିହାରେ ଜନ୍ମମୃତ୍ୟୁ ରେଜିଷ୍ଟ୍ରେସନର ଉନ୍ନତି ପାଇଁ ସ୍ଥିର କରାଗଲା। ଗୋଟିଏ ସଂସ୍ଥା ଗଠନ ହେଲା। ରେଜିଷ୍ଟ୍ରର ଜେନେରାଲ ଏବଂ ଏକ ଅଫିସିଓ ସେନ୍‌ସସ୍ କମିଶନରଙ୍କ ନେତୃତ୍ୱରେ ଜନ୍ମମୃତ୍ୟୁ ଏବଂ ଜନଗଣନା ନିମନ୍ତେ ଗୃହ ମନ୍ତ୍ରଣାଳୟ ଅଧୀନରେ। ୧୯୫୧ ପର୍ଯ୍ୟନ୍ତ ଜନଗଣନା ସଂସ୍ଥା ଜନଗଣନା ଠିକ୍ ପୂର୍ବରୁ ଆବିର୍ଭାବ ହୁଏ ଏବଂ ପରେ ୨-୩ ବର୍ଷ ମଧ୍ୟରେ ଉଭାଇଯାଏ। ୧୯୫୧ ପରଠାରୁ ଏକ କେନ୍ଦ୍ରର ସ୍ଥାୟୀଗଠନ କରି ଜନ୍ମ ମୃତ୍ୟୁର ପଞ୍ଜିକରଣକୁ ଉନ୍ନତ କରିବାକୁ ପ୍ରଚେଷ୍ଟା କରାଗଲା। ୧୯୫୧ ଜନଗଣନା ସ୍ୱାଧୀନତା ପରର ପ୍ରଥମ ଜନଗଣନା। ଜନଗଣନା ରିପୋର୍ଟ, ଏହି ଜନଗଣନାରେ, ପୂର୍ବ ଜନଗଣନାଠାରୁ ସଂପୂର୍ଣ୍ଣ ଅଲଗା। ସେହି ରିପୋର୍ଟରେ ଜନସଂଖ୍ୟା ବୃଦ୍ଧି ରୋକିବାକୁ ଜନ୍ମହାର କମ୍ କରିବା ବିଷୟରେ ଗୁରୁତ୍ୱ ଦେଇଥିଲା। ପ୍ରଥମ ଥର ପାଇଁ ଏହି ଜନଗଣନାରେ ଜନସଂଖ୍ୟା ପରିସଂଖ୍ୟାନର ଉନ୍ନତି ପାଇଁ ପୁନଃ କ୍ଷେତ୍ର ଆକଳନ ବ୍ୟବସ୍ଥା ପ୍ରଣୟନ କରାଯାଇଥିଲା। ୧୯୬୧ ଜନଗଣନାରେ ବିଶେଷତ୍ୱ ହେଲା ଆନୁଷଂଗିକ ଗବେଷଣା। ପ୍ରତ୍ୟେକ ଜନଗଣନାରେ ସରକାରଙ୍କ ଆବଶ୍ୟକତାକୁ ଆଖି ଆଗରେ ରଖି ତଫସିଲ୍‌ରେ ପ୍ରଶ୍ନ ପରିବର୍ତ୍ତିତ ହୋଇଥାଏ। ୧୯୭୧ ଜନଗଣନାରେ ବିଶେଷତ୍ୱ ହେଲା, ବର୍ତ୍ତମାନର ପ୍ରଜନନ, ସ୍ଥାନାନ୍ତର ସଂପର୍କୀୟ ତଥ୍ୟ ଏବଂ ଅର୍ଥନୈତିକ ପ୍ରଶ୍ନଗୁଡ଼ିକ କ୍ଷେତ୍ରରେ ପରିବର୍ତ୍ତନ। ୧୯୮୧ରେ ପିଛିଲା ପ୍ରଜନନ ସଂପର୍କରେ ପ୍ରଶ୍ନ ଯଥା କେବେ ବି ଜନ୍ମିଥିବା ଶିଶୁ ଏବଂ ଜୀବିତ ଶିଶୁଙ୍କ ସଂଖ୍ୟା ସଂପର୍କିତ ପ୍ରଶ୍ନ। ପରବର୍ତ୍ତୀ କାଳରେ ପ୍ରାୟ ପ୍ରଶ୍ନ ଅପରିବର୍ତ୍ତିତ ରହିଛି। ଏହା ସଂଗକୁ ଜନଗଣନାରୁ ସଂଗୃହୀତ ତଥ୍ୟର 'ପ୍ରସେସିଂ' ପାଇଁ ବ୍ୟବହୃତ ପ୍ରଣାଳୀର ପରିବର୍ତ୍ତନ ନିକଟର ଜନଗଣନାଗୁଡ଼ିକର ବିଶେଷତ୍ୱ ପ୍ରତିପାଦନ କରେ। ୨୦୦୧ ଜନଗଣନାରୁ ବ୍ୟବହୃତ 'ଆଇ.ସି.ଆର୍. ଟେକ୍ନୋଲୋଜି' ପରିସଂଖ୍ୟାନ ପ୍ରତିବେଦନରେ କ୍ଷୀପ୍ରତା ପାଇଁ ସାହାଯ୍ୟ କରେ ତାହା ନୁହେଁ ଏହା ଶତ ପ୍ରତିଶତ ତଫସିଲକୁ ବ୍ୟବହାର କରି ତଥ୍ୟ ପ୍ରଦାନ କରିଥାଏ। ୨୦୧୧ ଜନଗଣନାରେ ପ୍ରାୟ ପୂର୍ବ ଜନଗଣନାର ପ୍ରଶ୍ନ ରହିଛି। ବିଶେଷ କରି ପଚରା ଯାଉଥିବା ପ୍ରଶ୍ନ ହେଲା ଜନ୍ମ ତାରିଖ ସମ୍ବନ୍ଧରେ। ଏହା ସଂଗକୁ ଭିନ୍ନକ୍ଷମ ତଥା ବିଭିନ୍ନ ଲିଂଗ ସଂପର୍କିତ ତଥ୍ୟର ଗୁରୁତ୍ୱକୁ ଉପଲବ୍ଧି କରି ସ୍ୱତନ୍ତ୍ର ପଦକ୍ଷେପ ନିଆଯାଇଛି।

ଭାରତର ଜନଗଣନା ପରିସଂଖ୍ୟାନ ସଂପର୍କୀୟ ଏକ କାର୍ଯ୍ୟ ରୂପେ ରହିନାହିଁ। ଜନସଂଖ୍ୟା ତଥ୍ୟ ଶୃଙ୍ଖଳା ଭାବେ ପରିବେଷଣ କରାଯାଏ ନାହିଁ। ଅଧିକତଃ ଏହାର ବିଶ୍ଳେଷଣ ଏବଂ ଅବଧାରଣ ଏକ ଆଗ୍ରହ ସୃଷ୍ଟିକାରୀ ରୂପରେ ପରିବେଷିତ ହୁଏ। ଅନେକ ବିଶେଷଜ୍ଞ ଜନଗଣନା ରିପୋର୍ଟ ତିଆରିରେ ସଂଶ୍ଳିଷ୍ଟ ହୋଇ ସାମାଜିକ ଓ ଅର୍ଥନୈତିକ ଦୃଷ୍ଟିରୁ ଗ୍ରହଣଯୋଗ୍ୟ ତଥ୍ୟର ଉତ୍‌ଥାପନ କରିଥାନ୍ତି। ଭାରତ, ଅଳ୍ପ କେତେକ ଦେଶ ମଧ୍ୟରେ ଗଣ୍ୟ ଯାହାର ଜନଗଣନାର ଇତିହାସ ଶହେ ବର୍ଷରୁ ଅଧିକ ପୁରୁଣା। ଇତିହାସର ଆଲୋଚନା ଆଗକୁ ବଢ଼ିବାକୁ ଉତ୍ସାହ ଦେଲାବେଳେ, ପିଛିଲା ଭୁଲକୁ ସୁଧାରିବାକୁ ସୁଯୋଗ ଦିଏ। ପରବର୍ତ୍ତୀ ଜନଗଣନାଗୁଡ଼ିକରେ ଏ ଇତିହାସ ଉପଯୋଗୀ ହେବାର ଆଶା ରଖି ଉପସଂହାର କରାଗଲା।

---

# ଜନଗଣନା କାନ୍‌ଭାସରେ ଲିଙ୍ଗଗତ ବୈଷମ୍ୟର ଚିତ୍ର

ମଣିଷ ସୃଷ୍ଟି ସମୟରୁ ପୁରୁଷ ଓ ସ୍ତ୍ରୀ ମଧ୍ୟରେ ପାର୍ଥକ୍ୟର ହୃଦବୋଧ ହୋଇଛି, ବିଶେଷ କରି ଶାରୀରିକ ଏବଂ ଶରୀର ତାତ୍ତ୍ୱିକ ବିଭିନ୍ନତା ଦୃଷ୍ଟିରୁ ପରବର୍ତ୍ତୀ କାଳରେ ସମାଜ ଗଠନ ହେଲାପରେ ଏହି ବିଭିନ୍ନତା ସମ୍ପର୍କ ରଖି ସମାନରେ ସ୍ତ୍ରୀ ଏବଂ ପୁରୁଷ ମଧ୍ୟରେ କର୍ମ ବିଭାଗ ଏବଂ ସମାଜରେ ଉଭୟଙ୍କ ସ୍ୱତନ୍ତ୍ର ସ୍ଥିତି ନିରୂପଣ କରାଗଲା । ଏହି ପ୍ରଣାଳୀରେ ସ୍ତ୍ରୀ-ପୁରୁଷ ମଧ୍ୟରେ ଅସମାନତା ପଶି ଆସିଲା ସ୍ତ୍ରୀର ଶାରୀରିକ ଏବଂ ତାତ୍ତ୍ୱିକ ଆବଶ୍ୟକତା ଦୃଷ୍ଟିରୁ ସୀମା ନିର୍ଦ୍ଧାରଣ କରି ତାକୁ ଦୁର୍ବଳ ଏବଂ ପରାଶ୍ରୟୀ ରୂପରେ ଚିତ୍ରଣ କରାଗଲା । ଏଭଳି ଚିନ୍ତାଧାରାର ଉପଦ୍ରବ ଏତେ ଉତ୍କଟ ହେଲା ଯେ ସମୟକ୍ରମେ ସ୍ତ୍ରୀ-ପୁରୁଷ ମଧ୍ୟରେ ବ୍ୟବଧାନ ବିଭିନ୍ନ କ୍ଷେତ୍ରରେ ବୃଦ୍ଧି ପାଇ ଉତ୍କଟ ଓ ବୈଷମ୍ୟରେ ରୂପ ନେଲା । ତେଣୁ ନାରୀ ଆନ୍ଦୋଳନରେ ସୂତ୍ରପାତ ହୋଇ, ନାରୀ ସ୍ଥିତିର ଉନ୍ନତି ପାଇଁ ପଦକ୍ଷେପ ନେବାକୁ ପ୍ରୟାସର ଆରମ୍ଭ ହୋଇ ତାହା ଜାରି ରହିଛି । ଏହି ପ୍ରୟାସ ପୃଷ୍ଠଭୂମିର ନିରୀକ୍ଷଣ କରି, ସ୍ତ୍ରୀଙ୍କ ସ୍ଥିତିର ଉନ୍ନତି ଆଣିବା ପାଇଁ ଯୋଜନା ଏବଂ ତାର ରୂପାୟନ ଦ୍ୱାରା ସମାହିତ ପରିବର୍ତ୍ତନ ରୂପରେଖ ନିର୍ଣ୍ଣୟ କରିବାରେ କାଇରୋ ଆନ୍ତର୍ଜାତିକ ଜନସଂଖ୍ୟା ଏବଂ ପ୍ରଗତି (୧୯୯୪) ଏବଂ ହୋଇଥିବା ଆନ୍ତର୍ଜାତିକ ମହିଳା ସମ୍ମିଳନୀ (୧୯୯୫)ରେ ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି । ଜନଗଣନାରେ ସ୍ତ୍ରୀ ପୁରୁଷ ଭିତ୍ତିରେ ତଥ୍ୟର ପ୍ରତିବେଦନକୁ ଓ ସବୁ ଯୋଜନା ପାଇଁ ଏକ ନିର୍ଦ୍ଦିଷ୍ଟ ମାଧ୍ୟମ ଭାବେ ବିବେଚନା କରି, ବିଶେଷକରି ସ୍ତ୍ରୀମାନଙ୍କ ସଂପର୍କିତ ତଥ୍ୟ ଅଧିକ ତନ୍ନ ତନ୍ନ ଭାବରେ ସଂଗ୍ରହ କରିବା ପାଇଁ ପ୍ରଚେଷ୍ଟା ଜାରି ରହିଛି । ସାଂପ୍ରତିକ ଚିନ୍ତାଧାରାରେ ସ୍ତ୍ରୀ ପୁରୁଷ ମଧ୍ୟରେ ସମାନତା, ମାନବିକ ଅଧିକାର ଅଂଶ ବିଶେଷ । ଏହାର ଲକ୍ଷ୍ୟ ହେଲା ସମାଜରେ ସ୍ତ୍ରୀ ଏବଂ ପୁରୁଷ ଉଭୟଙ୍କ ସମାନ ଭାବରେ ବିଭିନ୍ନ ସୁବିଧା ହାସଲ କରିବା ଏବଂ ନିଜ ନିଜର ଦାୟିତ୍ୱ ତୁଲାଇବାରେ ସ୍ୱଚ୍ଛଳଭାବେ ସକ୍ଷମ ହେବା । ସ୍ତ୍ରୀ-ପୁରୁଷ ଉଭୟଙ୍କ ସଂପର୍କିତ ସମାନତା ହାସଲ କରି ହେବ, ତାଙ୍କ ସଂପର୍କିତ ଭିନ୍ନତାରୁ ବିଶ୍ଳେଷଣ କରି ଏବଂ ପୂର୍ବାନୁଭୂତିର ଅନୁଶୀଳନ କରି ପ୍ରତ୍ୟେକ ସ୍ତ୍ରୀର ଯଥା ଯୋଜନା, କାର୍ଯ୍ୟକ୍ରମ ସବୁ ସମୟରେ ତଦାରଖ ଏବଂ ମୂଲ୍ୟାଙ୍କନ ଦ୍ୱାରା ନୀତି ଓ ଆଇନଗୁଡ଼ିକରେ ଯଥାଯଥ ଉପଯୋଗ ଦ୍ୱାରା ଏହାର ପ୍ରସ୍ତୁତି କ୍ରମରେ ନିମ୍ନଲିଖିତ ଚାରୋଟି ସ୍ତରକୁ ଉପଯୋଗ କରାଯାଇପାରେ ।

୧. ଲିଙ୍ଗଗତ ଦୃଷ୍ଟି ତଥ୍ୟର ପୃଥକୀକରଣ ଏବଂ ବିଶ୍ଳେଷଣ ତଥ୍ୟ

୨. ସ୍ତ୍ରୀ ଏବଂ ପୁରୁଷ ଉଭୟଙ୍କ ପାଇଁ ଏବଂ ଉଭୟଙ୍କ ସହଯୋଗରେ ପ୍ରମାଣିତ ସଂପର୍କିତ କାର୍ଯ୍ୟକ୍ରମର ରୂପରେଖ ଓ ମୂଲ୍ୟାଙ୍କନକୁ ସମ୍ଭବ କରିବା ।

୩. ସ୍ତ୍ରୀ ପୁରୁଷଙ୍କ ଆବଶ୍ୟକତାକୁ ଦୃଷ୍ଟିରେ ରଖି ବିଭିନ୍ନ କ୍ଷେତ୍ରରେ ଲିଙ୍ଗଗତ ବୈଷମ୍ୟ ଦୂର କରି ସମାନତା ଆଣିବାରେ ଚେଷ୍ଟିତ ହେବା ।

୪. ପ୍ରତ୍ୟେକ ଅର୍ଗାନାଇଜେସନରେ ପରିବର୍ତ୍ତନ ଆଣିବା ଏବଂ ଆବଶ୍ୟକୀୟ ଦକ୍ଷତା ସୃଷ୍ଟି କରିବା ଉପଯୁକ୍ତ କାର୍ଯ୍ୟକ୍ରମ ପ୍ରସ୍ତୁତି ପାଇଁ ।

ଉପରୋକ୍ତ ସ୍ତରଗୁଡ଼ିକର ପ୍ରଥମ ସ୍ତର ଜନଗଣନା ସଂପର୍କିତ । ଗୋଟିଏ ଦଶନ୍ଧିପରେ ସଂଗୃହୀତ ତଥ୍ୟ ଯୋଜନାର ଉପଯୁକ୍ତ ମୂଲ୍ୟାଙ୍କନ ଏବଂ ପୁନଃ ଯୋଜନା ପାଇଁ ଉପାଦେୟ ତଥ୍ୟ ପ୍ରଦାନକରେ । ଏକ ଉତ୍ତମ ବ୍ୟବଧାନରେ ସମୟ କ୍ରମିକ ଭିତ୍ତିରେ ତଥ୍ୟ, ସ୍ତ୍ରୀ ପୁରୁଷଙ୍କ ପ୍ରଗତିର ପୃଥକ ଭାବେ ବୃଦ୍ଧି ବିଷୟରେ ସମ୍ୟକ ଧାରଣା ଦେଇଥାଏ ।

ଜନଗଣନା ଆରମ୍ଭ ସମୟ ସ୍ତ୍ରୀ ଓ ପୁରୁଷ ସଂପର୍କୀୟ ଅନେକ ତଥ୍ୟ ପୃଥକ ପୃଥକ ସାରଣୀରେ ଦିଆଯାଇଥାଏ । ଲିଙ୍ଗ ଅନୁପାତ ରେ ଜନସଂଖ୍ୟା, ସ୍ତ୍ରୀ ପୁରୁଷଙ୍କ ସାକ୍ଷରତା ହାର

ଏବଂ ସ୍ତ୍ରୀ ପୁରୁଷଙ୍କ କାର୍ଯ୍ୟ କରୁଥିବା ହାର ଇତ୍ୟାଦି ଏଭଳି କିଛି ଉଦାହରଣ । ଜନଗଣନାରୁ ସଂଗୃହୀତ ଅନ୍ୟାନ୍ୟ ତଥ୍ୟ ଯଥା ସ୍ଥାନାନ୍ତର ଇତ୍ୟାଦି ପାଇଁ ମଧ୍ୟ ଲିଂଗଭେଦରେ ସାରଣୀ ପ୍ରସ୍ତୁତ କରାଯାଇପାରେ । ଲିଂଗଗତ ବୈଷମ୍ୟ ବିଷୟରେ ଅଧିକ ସଚେତନତା ସୃଷ୍ଟି ପାଇଁ ଲିଂଗ ସମ୍ପର୍କୀୟ ତଥ୍ୟ ସଚେତନତା ସୃଷ୍ଟି ପାଇଁ ପ୍ରାକ୍‌ଜନଗଣନା କାଳରେ ବିହିତ ପଦକ୍ଷେପ ନିଆଯାଇଛି ୨୦୧୧ ଜନଗଣନା ପାଇଁ ।

ଭାରତର ଜନଗଣନା ଦେଶର ଜନସଂଖ୍ୟାର ପ୍ରତିଛବି ପ୍ରଦାନ କରେ ତଥା ଜନସାଂଖ୍ୟିକ, ସାମାଜିକ, ସାଂସ୍କୃତିକ ଏବଂ ଅର୍ଥନୈତିକ ଦୃଷ୍ଟିରୁ ସ୍ତ୍ରୀ ଏବଂ ପୁରୁଷଙ୍କ ଆପେକ୍ଷିକ ସ୍ଥିତି ସଂପର୍କରେ ସୂଚନା ଦିଏ । ସ୍ତ୍ରୀ-ପୁରୁଷ ଭିତ୍ତିରେ ତଥ୍ୟ ସଂଗ୍ରହ ସଠିକ୍ ଭାବରେ କୌଣସି କ୍ଷେତ୍ରରେ କରିବା ପାଇଁ, ଲିଂଗ ଗତ ଭେଦ ସଂପର୍କରେ ସଚେତନତାର ଉଦ୍ରେକ ପାଇଁ ଲିଂଗଗତ ଭେଦ ବିଷୟରେ ତାଲିମ କାଯ୍ୟକ୍ରମ ନିଆଯାଇଛି । ଜନଗଣନା ସଂପର୍କିତ ପ୍ରତ୍ୟେକ ସ୍ତରରେ କାର୍ଯ୍ୟକର୍ତ୍ତା ପାଇଁ । ଏକମାତ୍ର ସାଲିସ ବିହୀନ ଉଦ୍ଦେଶ୍ୟ ହେଲା ଯେଉଁମାନେ ଗଣନାପାଇଁ ଉପଯୁକ୍ତ ସେଭଳି ପ୍ରତ୍ୟେକ ମଣିଷର ଗଣନା, କାହାକୁ ନଛାଡି କିମ୍ବା ବାରମ୍ବାର ଗଣନାକରି ଏବଂ ଲିଂଗଗତ ପକ୍ଷପାତିତା, ଆଞ୍ଚଳିକ ଏବଂ ଜାତିଭିତ୍ତିକ ପକ୍ଷପାତିତା ବିନା ପ୍ରତ୍ୟେକ ବ୍ୟକ୍ତିର ବ୍ୟକ୍ତିଗତ ତଥ୍ୟ ସଠିକ୍ ଭାବରେ ସଂଗ୍ରହ କରିବା ।

ଏହି ଲକ୍ଷ୍ୟକୁ ହାସଲ ପାଇଁ, ଗଣନାକାରୀଙ୍କ ଦକ୍ଷତା ବଢାଇବା ନିହାତି ଆବଶ୍ୟକ । ମୂଳତଃ ସେଭଳି ତଥ୍ୟର ସଠିକ୍ ସଂଗ୍ରହ ପାଇଁ ଯାହା ଉତ୍ତରଦାତାମାନେ ଦେବାକୁ ସଂକୋଚ ବୋଧ କରନ୍ତି, ବିଶେଷକରି ଗୃହର ସ୍ତ୍ରୀ ସଭ୍ୟମାନଙ୍କ ସଂପର୍କରେ ସାଧାରଣତଃ ଏହା ଶିଶୁ, ଯୁବତୀ ଏବଂ ବୃଦ୍ଧା ସ୍ତ୍ରୀ ବିବାହ ବିଚ୍ଛେଦ ହୋଇଥିବା ବା ସ୍ୱାମୀଠାରୁ ଅଲଗା ରହୁଥିବା ନାରୀ, ଭିନ୍ନକ୍ଷମ, ଘର ଚାକରାଣୀ, ଭଡାଟିଆ ଏବଂ ଟଙ୍କା ଦେଇ ରହୁଥିବା ଅତିଥି ଇତ୍ୟାଦି ସ୍ତ୍ରୀଙ୍କ କ୍ଷେତ୍ରରେ ଘଟିଥାଏ । ଉପର ଲିଖିତ ଚିନ୍ତନ ପ୍ରତ୍ୟେକ ତାଲିମ କାର୍ଯ୍ୟକ୍ରମର ମୁଖ୍ୟ ଅଂଶ ଭାବରେ ରହିବା ଆବଶ୍ୟକ ।

ପୁନଶ୍ଚ ଏଭଳି ଜିଲ୍ଲା/ଉପଜିଲ୍ଲା ସହର ରହିଛି ଯେଉଁମାନେ ସ୍ତ୍ରୀ ପୁରୁଷ ମଧ୍ୟରେ ବ୍ୟବଧାନ ଜନଗଣନା, ସାକ୍ଷରତା ଅର୍ଥ ଉପଯୋଗକାରୀ କାର୍ଯ୍ୟ ଅଧିକ ବିସ୍ତୃତ । ଏଭଳି ପରିସ୍ଥିତି ପାଇଁ କମ୍ ବୁଝିବା, ସାମାଜିକ ତଥା ସାଂସ୍କୃତିକ ବାଧା ବିଷୟରେ ସଂବେଦନଶୀଳତା, ମୂଳତଃ ଦାୟୀ କାରଣ ଏହା ବାସ୍ତବ ପରିସ୍ଥିତିକୁ ଘୋଡାଇ ଦିଏ । ଏହି ଦିଗଗୁଡିକ ତାଲିମ ଏବଂ ପ୍ରଚ୍ଚର ପାଇଁ ଅଧିକ ପ୍ରଚେଷ୍ଟା ଆବଶ୍ୟକ ।

ଲିଂଗଗତ ବୈଷମ୍ୟ ଦୃଷ୍ଟିରୁ ସଂକଟ ଶଂକୁଳ ଜିଲ୍ଲାଗୁଡିକୁ ନିର୍ଣ୍ଣୟ କରିବା ପାଇଁ ନିମ୍ନଲିଖିତ ତିନୋଟି ହାରକୁ ବ୍ୟବହାର କରାଯାଇଛି ଯେହେତୁ ଏହା ସଂପର୍କୀୟ ପରିସଂଖ୍ୟାନ ଗ୍ରାମ ପର୍ଯ୍ୟନ୍ତ ଉପଲବ୍ଧ ।

- ଲିଂଗାନୁପାତ (୯୦୦ରୁ କମ୍) (ଏକ ନିୟୁତ ଜନସଂଖ୍ୟାରୁ ଅଧିକ ନଗରୀ ପାଇଁ ୮୭୫)
- ସ୍ତ୍ରୀ ସାକ୍ଷରତା ହାର (ଶତକଡା ୩୦ଭାଗରୁ କମ୍) (ଏକ ମିଲିୟନ୍‌ରୁ ଅଧିକ ଜନସଂଖ୍ୟା ଥିବା ନଗରୀ କ୍ଷେତ୍ରରେ ଶତକଡା ୬୫ ଭାଗ)
- ସ୍ତ୍ରୀ କାର୍ଯ୍ୟଭାଗିଦାରୀହାର (ଶକତଡା ୨୦ଭାଗରୁ କମ୍) (ଏକ ମିଲିଅନ୍‌ରୁ ଅଧିକ ଜନସଂଖ୍ୟା ଥିବା ନଗରୀ କ୍ଷେତ୍ରରେ ଶତକଡା ୧୨ଭାଗ) ଏକ ମିଲିଅନ୍‌ରୁ ଅଧିକ ଜନସଂଖ୍ୟା ଥିବା ନଗରୀମାନଙ୍କରେ ବନ୍ଧନୀରେ ଦିଆଯାଇଥିବା ଭଳି ପରିବର୍ତ୍ତନ କରାଯାଇଛି ।

ତାଲିମ ସଂଖ୍ୟାକୁ, ଏହି ଲିଂଗ ଭିତ୍ତିକ ପୃଥକ ତଥ୍ୟ ସଂଗ୍ରହରେ ଦେଖାଯାଉଥିବା ସ୍ଥାନୀୟ ବାଧା ବିଘ୍ନକୁ ନିରୂପଣ କରି ତାକୁ ଦୂର କରିବା ପାଇଁ ଚେଷ୍ଟା ଆବଶ୍ୟକ । ସେଭଳି ଲିଂଗଗତ ବୈଷମ୍ୟ ଦୃଷ୍ଟିରୁ ସଂକଟମୟ ଉପଜିଲ୍ଲାଗୁଡିକୁ ନିର୍ଣ୍ଣୟ କରି ସେଦିଗରେ ଅଧିକ ଦୃଷ୍ଟି ଆବଶ୍ୟକ । ୨୦୦୧ ମସିହାରେ କେତେକ ଗ୍ରାମରେ ସ୍ତ୍ରୀ କାର୍ଯ୍ୟ ଭାଗୀଦାରୀ ଥିଲା ଅବିଶ୍ୱାସନୀୟ ଭାବରେ କମ୍ (ଶକତଡା ୫ଭାଗ)

ତାଲିମରେ ସହାୟତା ପାଇଁ ସାଧାରଣ ସଚେତନତା ସୃଷ୍ଟି ଦୃଷ୍ଟିରୁ ଜିଲ୍ଲା, ଉପଜିଲ୍ଲାଗୁଡିକର ଲିଂଗ ଭିତ୍ତିକ ବୈଷମ୍ୟ ଜନସଂଖ୍ୟା, ଶିଶୁ ଜନସଂଖ୍ୟା, ସାକ୍ଷରତାହାର ଏବଂ କାର୍ଯ୍ୟ କରୁଥିବା ଜନସଂଖ୍ୟାର ହାର ସଂପର୍କୀୟ ତଥ୍ୟ ୨୦୦୧ମସିହା ଜନ ଗଣନାରୁ ବ୍ୟବହାର କରାଯାଇପାରେ । ଅନ୍ୟ ଏକ ଉପାୟ ହେଲା, ପ୍ରତ୍ୟେକ ଅଞ୍ଚଳର ସ୍ଥାନୀୟ ଅଣସଂଗଠିତ ଅର୍ଥନୈତିକ କାର୍ଯ୍ୟ କ୍ଷେତ୍ରଗୁଡିକ (ଯେଉଁଠି ମହିଳାମାନେ କାର୍ଯ୍ୟ କରୁଥାନ୍ତି) ସଂପର୍କରେ ଆଗୁଆ ବିବରଣୀ ସଂଗ୍ରହ କରିବା ଯଦି କୌଣସି କାରଣରୁ ଉତ୍ତରଦାତା ସ୍ତ୍ରୀ ସଭ୍ୟଙ୍କୁ କର୍ମୀ ଭାବରେ ସ୍ୱତଃ ଜଣାଇଲେ, ଜନଗଣନାକାରୀ ଅଧିକ ପ୍ରଶ୍ନ ପଚାରି ତଥ୍ୟ ଅନ୍ୟ ତଥ୍ୟ ସହିତ ତୁଳନା କରି ଉତ୍ତର ଆଣିବା ଆବଶ୍ୟକ ।

ଉପସଂହାରରେ ଆଉ ଏକ ଦିଗ ପ୍ରତି ଦୃଷ୍ଟି ଆକର୍ଷଣ କରାଯାଇପାରେ । ପ୍ରତ୍ୟେକ ବ୍ୟକ୍ତି (ପୁରୁଷ ବା ସ୍ତ୍ରୀ) ଦୁଇଟି ଜୈବିକ ବିଭାଗରେ ଜନସଂଖ୍ୟା ଭାବରେ ବର୍ଗୀକୃତ । ତେବେ ଏକ ତୃତୀୟ ବିଭାଗର ମଣିଷ ଯେଉଁ ଉଭୟ ଲିଂଗୀ କୌଣସି ଏକ ବିଭାଗରେ (ପୁରୁଷ ବା ସ୍ତ୍ରୀ) ମଧରେ ବର୍ଗୀକରଣ କରାଯାଇନପାରନ୍ତି, ତେଣୁ ଭାରତୀୟ ଜନଗଣନାରେ ତୃତୀୟ ଲିଂଗର ଅବଧାରଣାନାହିଁ, କାରଣ ପ୍ରତ୍ୟେକ ମଣିଷ ସାମାଜିକ ଜୀବନରେ ବିବାହ ବା ପରିବାର ଦ୍ୱାରା ନିର୍ଣ୍ଣିତ କାର୍ଯ୍ୟ ଯଥା ପିତା, ମାତା, ସ୍ୱାମୀ ଏବଂ ସ୍ତ୍ରୀ ମଧ୍ୟରେ ସୀମିତ । ଏଭଳି କ୍ଷେତ୍ରରେ ନିଜକୁ ତୃତୀୟ ଲିଂଗ ଭାବେ ପ୍ରଦର୍ଶନ କରୁଥିଲେ ମଧ୍ୟ ସେମାନଙ୍କୁ ଜନଗଣନାରେ ପୁରୁଷ ଭାବେ ଦର୍ଶାଯାଇଥିଲା । ଏହା ପୁରୁଷଙ୍କ ସଂଖ୍ୟା ଅଧିକ କରିବାରେ କିଛି ସାହାଯ୍ୟ କରୁଥାଇପାରେ । ୨୦୧୧ରେ "ଅନ୍ୟାନ୍ୟ" ସ୍ତମ୍ଭ ପ୍ରଦାନକରି ନୂତନ ଭାବେ ତୃତୀୟ ଲିଂଗର ବିଷୟରେ ଲେଖିବା ପାଇଁ ସୁଯୋଗ ଦିଆଯାଇଛି । ଉତ୍ତରଦାତାଙ୍କ କହିବା ଅନୁଯାୟୀ ତାହା ଲିପିବଦ୍ଧ କରାଯାଇପାରେ । ଝିଅଙ୍କ କ୍ଷେତ୍ରରେ କିଛିଟା ଅନାଗ୍ରହ ବିଶେଷ କରି ୦-୪ ଏବଂ ୫-୯ ବର୍ଷର ଶିଶୁଙ୍କ ମଧ୍ୟରେ ଝିଅଙ୍କ ସଂଖ୍ୟା କମ୍ ହେବା କିଛିଟା କାରଣ ହୋଇପାରେ । ସ୍ତ୍ରୀ ସଂଖ୍ୟା କମ୍ ହେବା ଏବଂ ସ୍ତ୍ରୀଙ୍କ ଆପେକ୍ଷିକ ପଛୁଆ ସ୍ଥିତି ଉଦ୍‌ବେଗର କାରଣ ହୋଇଥିବା ହେତୁ ଗଣନାରେ ବିଶେଷ ସାବଧାନତା ପାଇଁ ପଦକ୍ଷେପ ଆବଶ୍ୟକ ।



# (କ) ବୈଷମ୍ୟ ଦ୍ୱାରା ସଙ୍କଟପୂର୍ଣ୍ଣ ଜିଲ୍ଲା
# ବାଲେଶ୍ୱର ଜିଲ୍ଲା

**ବା**ଲେଶ୍ୱର ଜିଲ୍ଲାର ନାମ ପ୍ରାକ୍ ସ୍ୱାଧୀନତା କାଳରୁ ଜନଗଣନା ରିପୋର୍ଟରେ ଦେଖିବାକୁ ମିଳେ । ତେବେ ବର୍ତ୍ତମାନର ବାଲେଶ୍ୱର ଜିଲ୍ଲା ଅବିଭକ୍ତ ବାଲେଶ୍ୱର ଜିଲ୍ଲାର କିଛି ଅଂଶକୁ ନେଇ ଗଠିତ । ୨୦୦୧ ମସିହାରେ ଏହି ଜିଲ୍ଲାର ଜନସଂଖ୍ୟା ପ୍ରାୟ ୨୦.୨୪ ଲକ୍ଷ ରହିଥିଲା । ତନ୍ମଧ୍ୟରୁ ୨.୨ଲକ୍ଷରୁ ଉର୍ଦ୍ଧ୍ୱ ୫ଟି ସହରରେ ବାସକରନ୍ତି । ଏହି ସହରାଞ୍ଚଳବାସୀଙ୍କୁ ଛାଡି ଗ୍ରାମାଞ୍ଚଳର ଜନସଂଖ୍ୟା ୨୫୮୭ଟି ଲୋକ ରହୁଥିବା ଗ୍ରାମରେ ବାସ କରନ୍ତି । ଜିଲ୍ଲାର ମୋଟ ୪୦.୩୬ ଲକ୍ଷ ପରିବାର ମଧ୍ୟରୁ ୩୪୪୧୨ ପରିବାରର ଗୃହମୁଖ୍ୟ ଜଣେ ସ୍ତ୍ରୀ । ଏହି ତଥ୍ୟ ଏବଂ ପରବର୍ତ୍ତୀ ପରିବେଶିତ ତଥ୍ୟ ୨୦୦୧ ଜନଗଣନା ଉପରେ ଆଧାରିତ ।

ଲିଂଗ ଅନୁପାତ ପ୍ରତ୍ୟେକ ଜନଗଣନା ରିପୋର୍ଟର ଅବିଚ୍ଛେଦ୍ୟ ଅଙ୍ଗ । ଭାରତରେ ଏହି ଅନୁପାତ ପ୍ରକାଶ କରାଯାଏ ହଜାରେ ପୁରୁଷ ପିଛା ସ୍ତ୍ରୀଙ୍କ ସଂଖ୍ୟା ହିସାବରେ । ଏହି ହାର ଜାତୀୟ ଏବଂ ରାଜ୍ୟସ୍ତରରେ ଯଥାକ୍ରମେ ୯୩୩ ଏବଂ ୯୭୨ ରହିଥିବାବେଳେ ଏହି ଜିଲ୍ଲା ପାଇଁ ଏହା ୯୫୩ । ସେହିଭଳି ଗ୍ରାମାଞ୍ଚଳ ପାଇଁ ଏହି ହାର ଦେଶ, ରାଜ୍ୟ ଏବଂ ଏହି ଜିଲ୍ଲା ପାଇଁ ଯଥାକ୍ରମେ ୯୪୬, ୯୮୭ ଏବଂ ୯୫୭ ରହିଥିଲା । ସହରାଞ୍ଚଳ ପାଇଁ ସେହି କ୍ରମରେ ଲିଂଗ ଅନୁପାତ ୯୦୦, ୮୯୫ ଏବଂ ୯୨୦ । ସେହିଭଳି ୧୨୮ଟି ଗ୍ରାମରେ ସ୍ତ୍ରୀ ସଂଖ୍ୟା ହଜାରେ ପୁରୁଷରେ ୮୦୦ରୁ କମ୍ ହୋଇଥିବାରୁ ଉଦ୍‌ବେଗଜନିତ ସ୍ଥିତିର ସୂଚନା ଦିଏ । ଅନ୍ୟ ଗ୍ରାମମାନଙ୍କରେ ମଧ୍ୟ ୮୦୧ରୁ ୯୦୦ (୪୮୦ଟି ଗ୍ରାମ) ଏବଂ ୯୦୧-୯୫୦ ଅନୁପାତଥିବା (୬୨୧ଟି ଗ୍ରାମ) ସ୍ତ୍ରୀ ଅନୁପାତ ଦୃଷ୍ଟିରୁ ସଂକଟ ରହିଥିବା କୁହାଯାଇପାରେ । ଲିଂଗ ଅନୁପାତ ୧୦୦୦ରୁ କମ୍ ହେଲେ ସେ ଅଞ୍ଚଳରେ ସ୍ତ୍ରୀମାନଙ୍କ ସ୍ଥିତିର ନ୍ୟୂନତାକୁ ସୂଚାଏ । ଏଣୁ ଏଭଳି ନିରୂପିତ ଅଞ୍ଚଳରେ ସ୍ତ୍ରୀମାନଙ୍କୁ ଗଣନା କରିବା ପାଇଁ ସ୍ୱତନ୍ତ୍ର ଦୃଷ୍ଟି ଏବଂ ପଦକ୍ଷେପ ଆବଶ୍ୟକ, ଯଦ୍ୱାରା ଆଗାମୀ ଜନଗଣନାରେ କ୍ରମଶଃ ହଜି ଯାଇଥିବା ନାରୀ ଭଳି ସ୍ଥିତି ହେବ ନାହିଁ ।

ଜନଗଣନାରୁ ମିଳୁଥିବା ଆଉ ଏକ ପୂର୍ଣ୍ଣ ଲିଂଗ ଅନୁପାତ ହେଲା ୦-୬ ବର୍ଷ ବୟସର ଶିଶୁଙ୍କର । ଏହି ହାର ହଜାରେ ପୁଅରେ ଝିଅ ସଂଖ୍ୟାକୁ ସୂଚାଏ । ଏହା ଦ୍ୱାରା ସମାଜରେ ଝିଅମାନଙ୍କର ସ୍ଥାନ ତାଙ୍କ ପ୍ରତି ସମାଜର ଦୃଷ୍ଟିଭଙ୍ଗୀ ଏବଂ ବ୍ୟବହାରର ଅନୁମାନ କରାଯାଏ । ଲିଂଗ ନିରୂପଣ କରି (ଜନ୍ମ ପୂର୍ବରୁ) ଗର୍ଭପାତ କରିବା ବା ଝିଅଙ୍କ ଅଳ୍ପ ବୟସରେ ହତ୍ୟା ଭଳି ଘୃଣ୍ୟ ପ୍ରଥା ଇତ୍ୟାଦି ବିଷୟରେ ସମ୍ୟକ୍ ସୂଚନା ମିଳେ ଲିଂଗ ଅନୁପାତ କମ୍‌ଥିବା ଅଞ୍ଚଳ ନିରୂପଣ କରିବା ଦ୍ୱାରା । ଭାରତ ପାଇଁ ଏହି ହାର ୯୨୭ ରହିଥିଲା ବେଳେ ଓଡିଶାରେ ଏହା ୯୫୩ ଏବଂ ଏହି ଜିଲ୍ଲାରେ ୯୪୪ । ଓଡିଶା ତଥା ଏହି ଜିଲ୍ଲା ସ୍ଥିତି ଭାରତ ତୁଳନାରେ ଭଲ ଥିଲେ ମଧ୍ୟ ଉଦ୍‌ବେଗର କାରଣ ରହିଛି । ବିଶେଷକରି ସହରାଞ୍ଚଳରେ ଏହି ହାର ଯଥାକ୍ରମେ- ଭାରତ, ଓଡିଶା ଏବଂ ଏହି ଜିଲ୍ଲା ପାଇଁ ୯୦୬, ୯୩୩ ଏବଂ ୯୪୫ ଥିବାରୁ କନ୍ୟା ଭ୍ରୂଣ ହତ୍ୟା ସଂପର୍କରେ ଇଂଗିତ କରେ । ଯଦିଓ ସହରାଞ୍ଚଳରେ ଶିକ୍ଷିତଙ୍କ ସଂଖ୍ୟା ଅଧିକ ଗ୍ରାମାଞ୍ଚଳରେ ସବୁସ୍ତରରେ, ଯଥା- ଭାରତ (୯୩୪), ଓଡିଶା (୯୫୫), ଏହି ଜିଲ୍ଲା (୯୪୩) ସହରାଞ୍ଚଳଠାରୁ ବେଶୀ ଏବଂ ଓଡିଶା ଏବଂ ଏହି ଜିଲ୍ଲାରେ ଭାରତ ତୁଳନାରେ ଅଧିକ । ଏହି ସମୟରେ ସଜାଗ ହେଲେ ସ୍ଥିତିରେ ଉନ୍ନତି ହେବାର ସମ୍ଭାବନା ରହିଛି । ଏକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ହେଲା ଏ ଜିଲ୍ଲାରେ ୪୬ଟି ଗ୍ରାମରେ ଝିଅପିଲା ନାହାନ୍ତି । ସେଇଭଳି ୬୫୪ଟି ଗ୍ରାମରେ ଝିଅମାନଙ୍କ ସଂଖ୍ୟା ଅତିକମ୍ (୮୦୦ରୁ କମ୍) ଏବଂ ୪୧୬ଟି ଗ୍ରାମରେ ୮୦୧ରୁ ୯୦୦ ମଧ୍ୟରେ । ଏହି ଅଞ୍ଚଳଗୁଡିକରେ ସ୍ତ୍ରୀ ବିଶେଷ କରି ଝିଅଙ୍କ ଗଣନା ପାଇଁ ଅଧିକ ସତର୍କତା ଅବଲମ୍ବନ କରିବା ଆବଶ୍ୟକ ।

ଜନଗଣନାରୁ ସ୍ତ୍ରୀ ପୁରୁଷ ବୈଷମ୍ୟର କିଛି ସୂଚନା ମିଳେ ସାକ୍ଷରତା ହାରରୁ । ୨୦୦୧ ଜନଗଣନା ଅନୁସାରେ ଭାରତର ସ୍ତ୍ରୀ ସାକ୍ଷରତା ହାର ଶତକଡା ୫୩.୭ ଥିବା ବେଳେ

ଓଡିଶାର ହାର ୫୦.୫ ଏବଂ ଏହି ଜିଲ୍ଲାର ହାର ୫୮.୯ ରହିଥିଲା । ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ପାର୍ଥକ୍ୟ ଦୃଷ୍ଟି ଆକର୍ଷଣକାରୀ । ଗ୍ରାମାଞ୍ଚଳରେ ପ୍ରତ୍ୟେକ କ୍ଷେତ୍ରରେ ଏହା ଶତକଡା ୬୦ରୁ କମ୍ ରହିଥିବାବେଳେ ସହରାଞ୍ଚଳରେ ଏହା ୭୦ରୁ ବେଶୀ । ସ୍ତ୍ରୀ ଏବଂ ପୁରୁଷ ମଧ୍ୟରେ ଏହି ଜିଲ୍ଲାରେ ବ୍ୟବଧାନ ସାମୂହିକ ଭାବରେ ୨୨.୮ ରହିଥିବା ବେଳେ, ଗ୍ରାମାଞ୍ଚଳରେ ଏହା ୨୩.୮ଏବଂ ସହରାଞ୍ଚଳରେ ୧୪.୬ । ଏହା ଏକ ଉଦ୍‌ବେଗଜନକ ସ୍ଥିତି । ମହିଳାମାନଙ୍କ ଅର୍ଥନୈତିକ କ୍ଷେତ୍ରରେ ଭୂମିକାର ଦୃଢ଼ୀକରଣ କରାଯାଉଛି ନାରୀ ସଶକ୍ତିକରଣ ଯୋଜନା ମାଧ୍ୟମରେ । ଏହି ଦୃଷ୍ଟିରୁ ଅର୍ଥକରୀ କାର୍ଯ୍ୟରେ ମହିଳାମାନଙ୍କ ଭାଗିଦାରୀ ଏକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଯାହା ଜନଗଣନାରୁ ମିଳିଥାଏ । ୨୦୦୧ ଜନଗଣନା ଅନୁସାରେ କାର୍ଯ୍ୟରେ ମହିଳାଙ୍କ ଭାଗିଦାରୀର ହାର ଶତକଡା: ଭାରତ କ୍ଷେତ୍ରରେ ୨୫.୬, ଓଡିଶା ପାଇଁ ୨୪.୭ ଏବଂ ଏହି ଜିଲ୍ଲା ପାଇଁ ୧୧.୪ଥିଲା । ପ୍ରତ୍ୟେକ କ୍ଷେତ୍ରରେ ଗ୍ରାମାଞ୍ଚଳ ତୁଳନାରେ ସହରାଞ୍ଚଳଗୁଡିକରେ ଏହି ହାର ବହୁତ୍ କମ୍ । ସ୍ତ୍ରୀ-ପୁରୁଷ ହାର ମଧ୍ୟରେ ବ୍ୟବଧାନ, ଏହି ଜିଲ୍ଲା ପାଇଁ, ସାମୂହିକ ଭାବରେ ୩୯.୯, ଗ୍ରାମାଞ୍ଚଳରେ ୩୯.୮ ଏବଂ ସହରାଞ୍ଚଳର ପାଇଁ ୪୦.୩ ଥିଲା । ସେହିଭଳି ୧୬୩ଟି ଗ୍ରାମରେ କୌଣସି ମହିଳା କର୍ମୀ ନଥିବା ଜଣାପଡେ ଏବଂ ୧୫୬୮ଟି ଗ୍ରାମରେ ସ୍ତ୍ରୀଙ୍କ ଭାଗିଦାରୀ ଶତକଡା ୧୦ ଭାଗରୁ କମ୍ । ଏସବୁ ଅଞ୍ଚଳରେ ଉପଯୁକ୍ତ ସଠିକ୍ ତଥ୍ୟ ସଂଗ୍ରହ ପାଇଁ ଅଧିକ ପ୍ରଚେଷ୍ଟା ଆବଶ୍ୟକ ।

ସାଧାରଣ ଭାବରେ କହିବାକୁ ଗଲେ, ଯଦିଓ ଓଡିଶା ତଥା ଏହି ଜିଲ୍ଲାରେ ଲିଂଗ ଅନୁପାତ ବେଶୀ, ତେବେ ସାମାଜିକ (ସାକ୍ଷରତା ହାର ଦୃଷ୍ଟିରୁ) ଏବଂ ଅର୍ଥନୈତିକ (ସ୍ତ୍ରୀ କାର୍ଯ୍ୟରେ ଭାଗିଦାରୀକୁ ଆଖିଆଗରେ ରଖି) ସ୍ଥିତି ଅତି ଭଲ ନୁହେଁ । ଜନଗଣନାରେ ସ୍ତ୍ରୀଙ୍କ ସଂପର୍କରେ ସଂପୂର୍ଣ୍ଣ ତଥ୍ୟ ହାସଲ ପାଇଁ ବିଶେଷ ପ୍ରଚେଷ୍ଟା ଆବଶ୍ୟକ । ଏହା ସଂଗକୁ ବିଭିନ୍ନ ନାରୀ ଅଭିମୁଖୀ ଯୋଜନା ଯେ ଉପଯୁକ୍ତ ହିତାଧିକାରୀ ପାଖରେ ପହଞ୍ଚୁଛି ତାର ମୂଲ୍ୟାଙ୍କନ ଏବଂ ପୁଙ୍ଖାନୁପୁଙ୍ଖ ତର୍ଜମା କରି କାର୍ଯ୍ୟାନ୍ୱୟନରେ ପରିବର୍ତ୍ତନ ଦିଗରେ ଜନଗଣନାରେ ସଂଗୃହୀତ ତଥ୍ୟକୁ ଅଧିକରୁ ଅଧିକ ବ୍ୟବହାର କରାଯାଇପାରିବ ।



# ପୁରୁଷ-ସ୍ତ୍ରୀ ଭିତ୍ତିକ ପରିସଂଖ୍ୟାନ

(ଉତ୍ସ: (୨୦୦୧ ଜନଗଣନା)

ରାଜ୍ୟ : ଓଡିଶା (୨୧) | ଆଇ. ଡି: ୨୧-୦୮

ଜିଲ୍ଲା : ବାଲେଶ୍ୱର(୦୮)

## ଜନସାଂଖ୍ୟିକ ଚିତ୍ର

| ରାଜ୍ୟ | | ଜିଲ୍ଲା | |
|---|---|---|---|
| ଜନସଂଖ୍ୟା | ୩୬୮୦୪୬୬୦ | ଜନସଂଖ୍ୟା | ୨୦୨୪୫୦୮ |
| ସହରାଞ୍ଚଳ ଜନସଂଖ୍ୟା | ୫୫୧୭୨୩୮ | ସହରାଞ୍ଚଳ ଜନସଂଖ୍ୟା | ୨୨୦୩୬୮ |
| ସହର ସଂଖ୍ୟା | ୧୩୮ | ସହର ସଂଖ୍ୟା | ୫ |
| ଉପଜିଲ୍ଲାଙ୍କ ସଂଖ୍ୟା | ୪୯୪ | ଉପଜିଲ୍ଲାଙ୍କ ସଂଖ୍ୟା | ୧୯ |
| ଲୋକ ବାସକରୁଥିବା ଗ୍ରାମ ସଂଖ୍ୟା | ୪୭୫୨୯ | ଲୋକ ବାସକରୁଥିବା ଗ୍ରାମ ସଂଖ୍ୟା | ୨୫୮୭ |
| ପରିବାର ସଂଖ୍ୟା | ୭୭୩୮୦୬୫ | ପରିବାର ସଂଖ୍ୟା | ୪୦୩୬୫୩ |
| ସ୍ତ୍ରୀ ମୁଖ୍ୟ ଥିବା ପରିବାର ସଂଖ୍ୟା | ୭୭୬୩୨୨ | ସ୍ତ୍ରୀ ମୁଖ୍ୟ ଥିବା ପରିବାର ସଂଖ୍ୟା | ୩୪୪୧୨ |

## ପୁରୁଷ-ସ୍ତ୍ରୀ ଅନୁପାତ (୧୦୦୦ ପୁରୁଷ ପାଇଁ ସ୍ତ୍ରୀ ସଂଖ୍ୟା)

| | ମୋଟ | ଗ୍ରାମାଞ୍ଚଳ | ସହରାଞ୍ଚଳ | ଜିଲ୍ଲାରେ ଥିବା ଗ୍ରାମସଂଖ୍ୟା ଅନୁସାରେ | ସଂଖ୍ୟା |
|---|---|---|---|---|---|
| ଜାତୀୟ ହାର | ୯୩୩ | ୯୪୬ | ୯୦୦ | ଅତିନିମ୍ନ (୮୦୦ ପର୍ଯ୍ୟନ୍ତ) | ୧୨୮ |
| ରାଜ୍ୟ ହାର | ୯୭୨ | ୯୮୭ | ୮୯୫ | ନିମ୍ନ (୮୦୧-୯୦୦ ପର୍ଯ୍ୟନ୍ତ) | ୪୮୦ |
| ଜିଲ୍ଲା ହାର | ୯୫୩ | ୯୫୭ | ୯୨୦ | ମଧ୍ୟମ (୯୦୧-୯୫୦ ପର୍ଯ୍ୟନ୍ତ) | ୬୨୧ |
| | | | | ଅଧିକ (୯୫୦ ରୁ ଅଧିକ) | ୧୩୫୮ |
| | | | | ମିଳିନଥିବା (ସ୍ତ୍ରୀ ସଂଖ୍ୟା) | ୦ |

## ୦-୬ ବର୍ଷର ପୁଅ ଏବଂ ଝିଅଙ୍କର ଅନୁପାତ (୧୦୦୦ ପୁଅପାଇଁ ଝିଅଙ୍କ ସଂଖ୍ୟା)

| | ମୋଟ | ଗ୍ରାମାଞ୍ଚଳ | ସହରାଞ୍ଚଳ | ଜିଲ୍ଲାରେ ଥିବା ଗ୍ରାମସଂଖ୍ୟା ଅନୁସାରେ | ସଂଖ୍ୟା |
|---|---|---|---|---|---|
| ଜାତୀୟ ହାର | ୯୨୭ | ୯୩୪ | ୯୦୬ | ଅତିନିମ୍ନ (୮୦୦ ପର୍ଯ୍ୟନ୍ତ) | ୬୫୪ |
| ରାଜ୍ୟ ହାର | ୯୫୩ | ୯୫୫ | ୯୩୩ | ନିମ୍ନ (୮୦୧-୯୦୦ ପର୍ଯ୍ୟନ୍ତ) | ୪୧୬ |
| ଜିଲ୍ଲା ହାର | ୯୪୪ | ୯୪୩ | ୯୪୫ | ମଧ୍ୟମ (୯୦୧-୯୫୦ ପର୍ଯ୍ୟନ୍ତ) | ୨୩୪ |
| | | | | ଅଧିକ (୯୫୦ ରୁ ଅଧିକ) | ୧୨୨୪ |
| | | | | ମିଳିନଥିବା (ସ୍ତ୍ରୀ ସଂଖ୍ୟା) | ୪୬ |

## ସ୍ତ୍ରୀ ସାକ୍ଷରତା ହାର (ଶତକଡା)

| | ମୋଟ | ଗ୍ରାମାଞ୍ଚଳ | ସହରାଞ୍ଚଳ | ଜିଲ୍ଲାରେ ଥିବା ଗ୍ରାମସଂଖ୍ୟା ଅନୁସାରେ | ସଂଖ୍ୟା |
|---|---|---|---|---|---|
| ଜାତୀୟ ହାର | ୫୩.୭ | ୪୬.୧ | ୭୨.୯ | ସାକ୍ଷର ମହିଳା ନଥିବା ଗ୍ରାମ | ୨୦ |
| ରାଜ୍ୟ ହାର | ୫୦.୫ | ୪୬.୭ | ୭୨.୯ | ଅତି ନିମ୍ନ (ଶତକଡା ୩୦ ପର୍ଯ୍ୟନ୍ତ) | ୧୮୯ |
| ଜିଲ୍ଲା ହାର | ୫୮.୯ | ୫୭.୪ | ୭୧.୨ | ନିମ୍ନ (ଶତକଡା ୩୧-୪୦ ପର୍ଯ୍ୟନ୍ତ) | ୧୪୦ |
| ଜିଲ୍ଲାରେ ସ୍ତ୍ରୀ ପୁରୁଷ ବ୍ୟବଧାନ (ପୁରୁଷ-ସ୍ତ୍ରୀ ହାର) | ୨୨.୮ | ୨୩.୮ | ୧୪.୬ | ମଧ୍ୟମ (ଶତକଡା ୪୧-୫୦ ) | ୩୧୨ |
| | | | | ଅଧିକ (ଶତକଡା ୫୦ରୁ ଅଧିକ) | ୧୯୨୬ |

## ସ୍ତ୍ରୀ କର୍ମୀଙ୍କ ହାର (ଶତକଡା)

| | ମୋଟ | ଗ୍ରାମାଞ୍ଚଳ | ସହରାଞ୍ଚଳ | ଜିଲ୍ଲାରେ ଥିବା ଗ୍ରାମସଂଖ୍ୟା ଅନୁସାରେ | ସଂଖ୍ୟା |
|---|---|---|---|---|---|
| | | | | ମହିଳା କର୍ମୀ ନଥିବା ଗ୍ରାମ | ୧୬୭ |
| ଜାତୀୟ ହାର | ୨୫.୬ | ୩୦.୮ | ୧୧.୯ | ଅତି ନିମ୍ନ (ଶତକଡା ୧୦ ପର୍ଯ୍ୟନ୍ତ) | ୧୫୭୮ |
| ରାଜ୍ୟ ହାର | ୨୪.୭ | ୨୭.୧ | ୧୦.୦ | ନିମ୍ନ (ଶତକଡା ୧୧-୨୦ ପର୍ଯ୍ୟନ୍ତ) | ୩୯୧ |
| ଜିଲ୍ଲା ହାର | ୧୧.୪ | ୧୧.୮ | ୮.୭ | ମଧ୍ୟମ (ଶତକଡା ୨୧-୩୦ ) | ୧୮୪ |
| ଜିଲ୍ଲାରେ ସ୍ତ୍ରୀ ପୁରୁଷ ବ୍ୟବଧାନ (ପୁରୁଷ-ସ୍ତ୍ରୀ ହାର) | ୩୯.୯ | ୩୯.୮ | ୪୦.୩ | ଅଧିକ (ଶତକଡା ୩୧-୪୦) | ୧୨୯ |
| | | | | ଅତି ଅଧିକ (ଶତକଡା ୪୦ ରୁ ଅଧିକ) | ୧୩୮ |

# ଭଦ୍ରକ ଜିଲ୍ଲା

**ଭ**ଦ୍ରକ ଜିଲ୍ଲାର ନାମ ପ୍ରାକ୍ ସ୍ୱାଧୀନତା କାଳରୁ ଜନଗଣନା ରିପୋର୍ଟରେ ଦେଖିବାକୁ ମିଳେ । ତେବେ ବର୍ତ୍ତମାନର ଭଦ୍ରକ ଜିଲ୍ଲା ଅବିଭକ୍ତ ବାଲେଶ୍ୱର ଜିଲ୍ଲାର କିଛି ଅଂଶକୁ ନେଇ ଗଠିତ । ୨୦୦୧ ମସିହାରେ ଏହି ଜିଲ୍ଲାର ଜନସଂଖ୍ୟା ପ୍ରାୟ ୧୩.୩୩ ଲକ୍ଷ ମଧ୍ୟରୁ ୧.୪ଲକ୍ଷରୁ ଊର୍ଦ୍ଧ୍ୱ ୩ଟି ସହରରେ ବାସକରନ୍ତି । ଏହି ସହରାଞ୍ଚଳବାସୀଙ୍କୁ ଛାଡି ଗ୍ରାମାଞ୍ଚଳର ଜନସଂଖ୍ୟା ୧୨୪୩ଟି ଲୋକରହୁଥିବା ଗ୍ରାମରେ ବାସ କରନ୍ତି । ଜିଲ୍ଲାର ମୋଟ ୨.୩୮ଲକ୍ଷ ପରିବାର ମଧ୍ୟରୁ ୨୧୫୭୪ ପରିବାରର ଗୃହମୁଖ୍ୟ ଜଣେ ସ୍ତ୍ରୀ । ଏହି ତଥ୍ୟ ଏବଂ ପରବର୍ତ୍ତୀ ପରିବେଶିତ ତଥ୍ୟ ୨୦୦୧ ଜନଗଣନା ଉପରେ ଆଧାରିତ ।

ଲିଂଗ ଅନୁପାତ ପ୍ରତ୍ୟେକ ଜନଗଣନା ରିପୋର୍ଟର ଅବିଚ୍ଛେଦ୍ୟ ଅଙ୍ଗ । ଭାରତରେ ଏହି ଅନୁପାତ ହଜାରେ ପୁରୁଷ ପିଛା ସ୍ତ୍ରୀଙ୍କ ସଂଖ୍ୟା ହିସାବରେ ପ୍ରକାଶ କରାଯାଏ । ଏହି ହାର ଜାତୀୟ ଏବଂ ରାଜ୍ୟସ୍ତରରେ ଯଥାକ୍ରମେ ୯୩୩ ଏବଂ ୯୭୨ ରହିଥିବାବେଳେ ଏହି ଜିଲ୍ଲା ପାଇଁ ଏହା ୯୭୪ । ସେଇଭଳି ଗ୍ରାମାଞ୍ଚଳ ପାଇଁ ଏହି ହାର ଦେଶ, ରାଜ୍ୟ ଏବଂ ଏହି ଜିଲ୍ଲା ପାଇଁ ଯଥାକ୍ରମେ ୯୪୬, ୯୮୭ ଏବଂ ୯୭୯ ରହିଥିଲା । ସହରାଞ୍ଚଳ ପାଇଁ ସେହି କ୍ରମରେ ଲିଂଗ ଅନୁପାତ ୯୦୦, ୮୯୫ ଏବଂ ୯୩୪ ରହିଥିଲା । ଜନଗଣନା ରିପୋର୍ଟ ଅନୁସାରେ ଏହି ଜିଲ୍ଲାରେ ଥିବା ୧୨୪୩ଟି ଗ୍ରାମ ମଧ୍ୟରୁ ଗୋଟିଏ ଗ୍ରାମରେ ସ୍ତ୍ରୀ ନଥିବା ରେକର୍ଡ କରାଯାଇଥିଲା । ସେଇଭଳି ୨୨ଟି ଗ୍ରାମରେ ସ୍ତ୍ରୀ ସଂଖ୍ୟା ହଜାରେ ପୁରୁଷରେ ୮୦୦ରୁ କମ୍ ହୋଇଥିବାରୁ ଉଦ୍‌ବେଗଜନିତ ସ୍ଥିତିର ସୂଚନା ଦିଏ । ଅନ୍ୟ ଗ୍ରାମମାନଙ୍କରେ ମଧ୍ୟ ୮୦୧ରୁ ୯୦୦ (୧୫୫ଟି ଗ୍ରାମ) ଏବଂ ୯୦୧-୯୫୦ ଅନୁପାତ ଥିବା (୨୬୯ଟି ଗ୍ରାମ) ସ୍ତ୍ରୀ ଅନୁପାତ ଦୃଷ୍ଟିରୁ ସଂକଟ ରହିଥିବା କୁହାଯାଇପାରେ । ଲିଂଗ ଅନୁପାତ ୧୦୦୦ରୁ କମ୍ ହେଲେ ସେ ଅଞ୍ଚଳରେ ସ୍ତ୍ରୀମାନଙ୍କ ସ୍ଥିତିର ନ୍ୟୂନତାକୁ ସୂଚାଏ । ଏଣୁ ଏଭଳି ନିରୂପିତ ଅଞ୍ଚଳରେ ସ୍ତ୍ରୀମାନଙ୍କୁ ଗଣନା କରିବା ପାଇଁ ସ୍ୱତନ୍ତ୍ର ଦୃଷ୍ଟି ଏବଂ ପଦକ୍ଷେପ ଆବଶ୍ୟକ, ଯଦ୍ୱାରା ଆଗାମୀ ଜନଗଣନାରେ କ୍ରମଶଃ ହଜି ଯାଇଥିବା ନାରୀ ଭଳି ସ୍ଥିତି ହେବ ନାହିଁ ।

ଜନଗଣନାରୁ ମିଳୁଥିବା ଆଉଏକ ପୂର୍ଣ୍ଣ ଲିଂଗ ଅନୁପାତ ହେଲା ୦-୬ବର୍ଷ ବୟସର ଶିଶୁଙ୍କର । ଏହି ହାର ହଜାରେ ପୁଅରେ ଝିଅ ସଂଖ୍ୟାକୁ ସୂଚାଏ । ଏହା ଦ୍ୱାରା ସମାଜରେ ଝିଅମାନଙ୍କର ସ୍ଥାନ ତାଙ୍କ ପ୍ରତି ସମାଜର ଦୃଷ୍ଟିଭଙ୍ଗୀ ଏବଂ ବ୍ୟବହାରର ଅନୁମାନ କରାଯାଏ । ଲିଂଗ ନିରୂପଣ କରି (ଜନ୍ମ ପୂର୍ବରୁ) ଗର୍ଭପାତ କରିବା ବା ଝିଅପିଲାଙ୍କ ଅଳ୍ପ ବୟସରେ ହତ୍ୟା ଭଳି ଘୃଣ୍ୟ ପ୍ରଥା ଇତ୍ୟାଦି ବିଷୟରେ ସମ୍ୟକ୍ ସୂଚନା ମିଳେ ଲିଂଗ ଅନୁପାତ କମ୍‌ଥିବା ଆଞ୍ଚଳ ନିରୂପଣ କରିବା ଦ୍ୱାରା । ଭାରତ ପାଇଁ ଏହି ହାର ୯୨୭ ରହିଥିଲା ବେଳେ ଓଡିଶାରେ ଏହା ୯୫୩ ଏବଂ ଏହି ଜିଲ୍ଲାରେ ୯୪୩ । ଓଡିଶା ତଥା ଏହି ଜିଲ୍ଲା ସ୍ଥିତି ଭାରତ ତୁଳନାରେ ଭଲ ଥିଲେ ମଧ୍ୟ ଉଦ୍‌ବେଗର କାରଣ ରହିଛି । ବିଶେଷକରି ସହରାଞ୍ଚଳରେ ଏହି ହାର ଯଥାକ୍ରମେ ଭାରତ, ଓଡିଶା ଏବଂ ଏହି ଜିଲ୍ଲାପାଇଁ ୯୦୬, ୯୩୩ ଏବଂ ୯୫୭ ଥିବାରୁ କନ୍ୟା ଭ୍ରୁଣ ହତ୍ୟା ସଂପର୍କରେ ଇଂଗିତ କରେ । ଯଦିଓ ସହରାଞ୍ଚଳରେ ଶିକ୍ଷିତଙ୍କ ସଂଖ୍ୟା ଅଧିକ ଗ୍ରାମାଞ୍ଚଳରେ ସବୁସ୍ତରରେ, ଯଥା- ଭାରତ (୯୩୪), ଓଡିଶା (୯୫୫), ଏହି ଜିଲ୍ଲା (୯୪୧) ସହରାଞ୍ଚଳଠାରୁ ବେଶୀ ଏବଂ ଓଡିଶା ଏବଂ ଏହି ଜିଲ୍ଲାରେ ଭାରତ ତୁଳନାରେ ଅଧିକ । ଏହି ସମୟରେ ସଜାଗ ହେଲେ ସ୍ଥିତିରେ ଉନ୍ନତି ହେବାର ସମ୍ଭାବନା ରହିଛି । ଏକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ହେଲା ଏ ଜିଲ୍ଲାରେ ୯ଟି ଗ୍ରାମରେ ଝିଅପିଲା ନାହାନ୍ତି । ସେଇଭଳି ୨୮୦ଟି ଗ୍ରାମରେ ଝିଅମାନଙ୍କ ସଂଖ୍ୟା ଅତିକମ୍ (୮୦୦ରୁ କମ୍) ଏବଂ ୨୧୯ଟି ଗ୍ରାମରେ ୮୦୧ରୁ ୯୦୦ ମଧ୍ୟରେ ଏହି ଅଞ୍ଚଳଗୁଡିକରେ ସ୍ତ୍ରୀ ବିଶେଷକରି ଝିଅଙ୍କ ଗଣନା ପାଇଁ ଅଧିକ ସତର୍କତା ଅବଲମ୍ବନ କରିବା ଆବଶ୍ୟକ ।

ଜନଗଣନାରୁ ସ୍ତ୍ରୀ ପୁରୁଷ ବୈଷମ୍ୟର କିଛି ସୂଚନା ମିଳେ ସାକ୍ଷରତା ହାରରୁ । ୨୦୦୧ ଜନଗଣନା ଅନୁସାରେ ଭାରତର ସ୍ତ୍ରୀ ସାକ୍ଷରତା ହାର ଶତକଡା ୫୩.୭ ଥିବାବେଳେ ଓଡ଼ିଶାର ହାର ୫୦.୫ ଏବଂ ଏହି ଜିଲ୍ଲାର ହାର ୬୨.୮ ରହିଥିଲା । ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ପାର୍ଥକ୍ୟ ଦୃଷ୍ଟି ଆକର୍ଷଣକାରୀ । ଗ୍ରାମାଞ୍ଚଳରେ ପ୍ରତ୍ୟେକ କ୍ଷେତ୍ରରେ ଏହା ଶତକଡା ୫୦ରୁ ଅଧିକ୍ ରହିଥିବାବେଳେ ସହରାଞ୍ଚଳରେ ଏହା ୭୦ରୁ କମ୍ । ସ୍ତ୍ରୀ ଏବଂ ପୁରୁଷ ମଧ୍ୟରେ ଏହି ଜିଲ୍ଲାରେ ବ୍ୟବଧାନ ସାମୂହିକ ଭାବରେ ୨୧.୯ ରହିଥିବାବେଳେ, ଗ୍ରାମାଞ୍ଚଳରେ ଏହା ୨୨.୪ ଏବଂ ସହରାଞ୍ଚଳରେ ୧୭.୫ ଯାହା ଏକ ଉଦ୍‌ବେଗଜନକ ସ୍ଥିତି । ମହିଳାମାନଙ୍କ ଅର୍ଥନୈତିକ କ୍ଷେତ୍ରରେ ଭୂମିକାର ଦୃଢ଼ୀକରଣ କରାଯାଉଛି ନାରୀ ସଶକ୍ତିକରଣ ଯୋଜନା ମାଧ୍ୟମରେ । ଏହି ଦୃଷ୍ଟିରୁ ଅର୍ଥକରୀ କାର୍ଯ୍ୟରେ ମହିଳାମାନଙ୍କ ଭାଗିଦାରୀ ଏକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଯାହା ଜନଗଣନାରୁ ମିଳିଥାଏ । ୨୦୦୧ ଜନଗଣନା ଅନୁସାରେ କାର୍ଯ୍ୟରେ ମହିଳାଙ୍କ ଭାଗିଦାରୀର ହାର ଶତକଡା: ଭାରତ କ୍ଷେତ୍ରରେ ୨୫.୬, ଓଡ଼ିଶା ପାଇଁ ୨୪.୭ ଏବଂ ଏହି ଜିଲ୍ଲା ପାଇଁ ୮.୧ ଥିଲା । ପ୍ରତ୍ୟେକ କ୍ଷେତ୍ରରେ ଗ୍ରାମାଞ୍ଚଳ ତୁଳନାରେ ସହରାଞ୍ଚଳଗୁଡ଼ିକରେ ଏହି ହାର ବହୁତ୍ କମ୍ । ସ୍ତ୍ରୀ ପୁରୁଷ ହାର ମଧ୍ୟରେ ବ୍ୟବଧାନ, ଏହି ଜିଲ୍ଲା ପାଇଁ, ସାମୂହିକ ଭାବରେ ୪୧.୦, ଗ୍ରାମାଞ୍ଚଳରେ ୪୧.୫ ଏବଂ ସହରାଞ୍ଚଳର ପାଇଁ ୩୭.୭ ଥିଲା । ସେହିଭଳି ୬୭ଟି ଗ୍ରାମରେ କୌଣସି ମହିଳା କର୍ମୀ ନଥିବା ଜଣାପଡେ ଏବଂ ୯୨୭ଟି ଗ୍ରାମରେ ସ୍ତ୍ରୀଙ୍କ ଭାଗିଦାରୀ ଶତକଡା ୧୦ ଭାଗରୁ କମ୍ । ଏସବୁ ଅଞ୍ଚଳରେ ଉପଯୁକ୍ତ ସଠିକ୍ ତଥ୍ୟ ସଂଗ୍ରହ ପାଇଁ ଅଧିକ ପ୍ରଚେଷ୍ଟା ଆବଶ୍ୟକ ।

ସାଧାରଣ ଭାବରେ କହିବାକୁ ଗଲେ, ଯଦିଓ ଓଡ଼ିଶା ତଥା ଏହି ଜିଲ୍ଲାରେ ଲିଂଗ ଅନୁପାତ ବେଶୀ ତେବେ ସାମାଜିକ (ସାକ୍ଷରତା ହାର ଦୃଷ୍ଟିରୁ) ଏବଂ ଅର୍ଥନୈତିକ ସ୍ଥିତି (ସ୍ତ୍ରୀ କାର୍ଯ୍ୟରେ ଭାଗିଦାରୀକୁ ଆଖିଆଗରେ ରଖି) ଅତି ଭଲ ନୁହେଁ । ଜନଗଣନାରେ ସ୍ତ୍ରୀଙ୍କ ସଂପର୍କରେ ସଂପୂର୍ଣ୍ଣ ତଥ୍ୟ ହାସଲ ପାଇଁ ବିଶେଷ ପ୍ରଚେଷ୍ଟା ଆବଶ୍ୟକ । ଏହା ସଂଗକୁ ବିଭିନ୍ନ ନାରୀ ଅଭିମୁଖୀ ଯୋଜନା ଯେ ଉପଯୁକ୍ତ ହିତାଧିକାରୀ ପାଖରେ ପହଞ୍ଚୁଛି ତା'ର ମୂଲ୍ୟାଙ୍କନ ଏବଂ ପୁଙ୍ଖାନୁପୁଙ୍ଖ ତର୍ଜମା କରି କାର୍ଯ୍ୟାନ୍ୱୟନରେ ପରିବର୍ତ୍ତନ ଦିଗରେ ଜନଗଣନାରେ ସଂଗୃହୀତ ତଥ୍ୟକୁ ଅଧିକରୁ ଅଧିକ ବ୍ୟବହାର କରାଯାଇପାରିବ ।



# ପୁରୁଷ-ସ୍ତ୍ରୀ ଭିତ୍ତିକ ପରିସଂଖ୍ୟାନ

(ଉତ୍ସ: (୨୦୦୧ ଜନଗଣନା)

ରାଜ୍ୟ : ଓଡିଶା (୨୧) ଆଇ. ଡି: ୨୧-୦୯
ଜିଲ୍ଲା : ଭଦ୍ରକ(୦୯)

**ଜନସାଂଖ୍ୟିକ ଚିତ୍ର**

| ରାଜ୍ୟ | | ଜିଲ୍ଲା | |
|---|---|---|---|
| ଜନସଂଖ୍ୟା | ୩୬୮୦୪୬୬୦ | ଜନସଂଖ୍ୟା | ୧୩୩୩୭୪୯ |
| ସହରାଞ୍ଚଳ ଜନସଂଖ୍ୟା | ୫୫୧୭୨୩୮ | ସହରାଞ୍ଚଳ ଜନସଂଖ୍ୟା | ୧୪୧୦୭୧ |
| ସହର ସଂଖ୍ୟା | ୧୩୮ | ସହର ସଂଖ୍ୟା | ୩ |
| ଉପଜିଲ୍ଲାଙ୍କ ସଂଖ୍ୟା | ୪୯୪ | ଉପଜିଲ୍ଲାଙ୍କ ସଂଖ୍ୟା | ୧୫ |
| ଲୋକ ବାସକରୁଥିବା ଗ୍ରାମ ସଂଖ୍ୟା | ୪୭୫୨୯ | ଲୋକ ବାସକରୁଥିବା ଗ୍ରାମ ସଂଖ୍ୟା | ୧୨୪୩ |
| ପରିବାର ସଂଖ୍ୟା | ୭୭୩୮୦୬୫ | ପରିବାର ସଂଖ୍ୟା | ୨୩୮୮୮୮ |
| ସ୍ତ୍ରୀ ମୁଖ୍ୟ ଥିବା ପରିବାର ସଂଖ୍ୟା | ୭୭୬୩୨୨ | ସ୍ତ୍ରୀ ମୁଖ୍ୟ ଥିବା ପରିବାର ସଂଖ୍ୟା | ୨୧୫୭୪ |

**ପୁରୁଷ-ସ୍ତ୍ରୀ ଅନୁପାତ (୧୦୦୦ ପୁରୁଷ ପାଇଁ ସ୍ତ୍ରୀ ସଂଖ୍ୟା)**

| | ମୋଟ | ଗ୍ରାମାଞ୍ଚଳ | ସହରାଞ୍ଚଳ | ଜିଲ୍ଲାରେ ଥିବା ଗ୍ରାମସଂଖ୍ୟା ଅନୁସାରେ | ସଂଖ୍ୟା |
|---|---|---|---|---|---|
| ଜାତୀୟ ହାର | ୯୩୩ | ୯୪୬ | ୯୦୦ | ଅତିନିମ୍ନ (୮୦୦ ପର୍ଯ୍ୟନ୍ତ) | ୨୨ |
| ରାଜ୍ୟ ହାର | ୯୭୨ | ୯୮୭ | ୮୯୫ | ନିମ୍ନ (୮୦୧-୯୦୦ ପର୍ଯ୍ୟନ୍ତ) | ୧୫୫ |
| ଜିଲ୍ଲା ହାର | ୯୭୪ | ୯୭୯ | ୯୩୪ | ମଧ୍ୟମ (୯୦୧-୯୫୦ ପର୍ଯ୍ୟନ୍ତ) | ୨୬୯ |
| | | | | ଅଧିକ (୯୫୦ ରୁ ଅଧିକ) | ୭୯୬ |
| | | | | ମିଳିନଥିବା (ସ୍ତ୍ରୀ ସଂଖ୍ୟା) | ୧ |

**୦-୬ ବର୍ଷର ପୁଅ ଏବଂ ଝିଅଙ୍କର ଅନୁପାତ (୧୦୦୦ ପୁଅପାଇଁ ଝିଅଙ୍କ ସଂଖ୍ୟା)**

| | ମୋଟ | ଗ୍ରାମାଞ୍ଚଳ | ସହରାଞ୍ଚଳ | ଜିଲ୍ଲାରେ ଥିବା ଗ୍ରାମସଂଖ୍ୟା ଅନୁସାରେ | ସଂଖ୍ୟା |
|---|---|---|---|---|---|
| ଜାତୀୟ ହାର | ୯୨୭ | ୯୩୪ | ୯୦୬ | ଅତିନିମ୍ନ (୮୦୦ ପର୍ଯ୍ୟନ୍ତ) | ୨୮୦ |
| ରାଜ୍ୟ ହାର | ୯୫୩ | ୯୫୫ | ୯୩୩ | ନିମ୍ନ (୮୦୧-୯୦୦ ପର୍ଯ୍ୟନ୍ତ) | ୨୧୯ |
| ଜିଲ୍ଲା ହାର | ୯୪୩ | ୯୪୧ | ୯୫୭ | ମଧ୍ୟମ (୯୦୧-୯୫୦ ପର୍ଯ୍ୟନ୍ତ) | ୧୩୪ |
| | | | | ଅଧିକ (୯୫୦ ରୁ ଅଧିକ) | ୫୯୬ |
| | | | | ମିଳିନଥିବା (ସ୍ତ୍ରୀ ସଂଖ୍ୟା) | ୯ |

**ସ୍ତ୍ରୀ ସାକ୍ଷରତା ହାର (ଶତକଡା)**

| | ମୋଟ | ଗ୍ରାମାଞ୍ଚଳ | ସହରାଞ୍ଚଳ | ଜିଲ୍ଲାରେ ଥିବା ଗ୍ରାମସଂଖ୍ୟା ଅନୁସାରେ | ସଂଖ୍ୟା |
|---|---|---|---|---|---|
| ଜାତୀୟ ହାର | ୫୩.୭ | ୪୬.୧ | ୭୨.୯ | ସାକ୍ଷର ମହିଳା ନଥିବା ଗ୍ରାମ | ୪ |
| ରାଜ୍ୟ ହାର | ୫୦.୫ | ୪୬.୭ | ୭୨.୯ | ଅତି ନିମ୍ନ (ଶତକଡା ୩୦ ପର୍ଯ୍ୟନ୍ତ) | ୩୦ |
| ଜିଲ୍ଲା ହାର | ୬୨.୮ | ୬୩.୦ | ୬୧.୪ | ନିମ୍ନ (ଶତକଡା ୩୧-୪୦ ପର୍ଯ୍ୟନ୍ତ) | ୪୭ |
| ଜିଲ୍ଲାରେ ସ୍ତ୍ରୀ ପୁରୁଷ ବ୍ୟବଧାନ | ୨୧.୯ | ୨୨.୪ | ୧୭.୫ | ମଧ୍ୟମ (ଶତକଡା ୪୧-୫୦ ) | ୧୧୦ |
| (ପୁରୁଷ-ସ୍ତ୍ରୀ ହାର) | | | | ଅଧିକ (ଶତକଡା ୫୦ରୁ ଅଧିକ) | ୧୦୫୨ |

**ସ୍ତ୍ରୀ କର୍ମୀଙ୍କ ହାର (ଶତକଡା)**

| | ମୋଟ | ଗ୍ରାମାଞ୍ଚଳ | ସହରାଞ୍ଚଳ | ଜିଲ୍ଲାରେ ଥିବା ଗ୍ରାମସଂଖ୍ୟା ଅନୁସାରେ | ସଂଖ୍ୟା |
|---|---|---|---|---|---|
| | | | | ମହିଳା କର୍ମୀ ନଥିବା ଗ୍ରାମ | ୬୭ |
| ଜାତୀୟ ହାର | ୨୫.୬ | ୩୦.୮ | ୧୧.୯ | ଅତି ନିମ୍ନ (ଶତକଡା ୧୦ ପର୍ଯ୍ୟନ୍ତ) | ୯୨୭ |
| ରାଜ୍ୟ ହାର | ୨୪.୭ | ୨୭.୧ | ୧୦.୦ | ନିମ୍ନ (ଶତକଡା ୧୧-୨୦ ପର୍ଯ୍ୟନ୍ତ) | ୧୩୬ |
| ଜିଲ୍ଲା ହାର | ୮.୧ | ୮.୧ | ୭.୭ | ମଧ୍ୟମ (ଶତକଡା ୨୧-୩୦ ) | ୪୨ |
| ଜିଲ୍ଲାରେ ସ୍ତ୍ରୀ ପୁରୁଷ ବ୍ୟବଧାନ | ୪୧.୦ | ୪୧.୫ | ୩୭.୭ | ଅଧିକ (ଶତକଡା ୩୧-୪୦) | ୩୩ |
| (ପୁରୁଷ-ସ୍ତ୍ରୀ ହାର) | | | | ଅତି ଅଧିକ (ଶତକଡା ୪୦ ରୁ ଅଧିକ) | ୩୮ |

# କେନ୍ଦ୍ରାପଡ଼ା ଜିଲ୍ଲା

ବର୍ତ୍ତମାନର କେନ୍ଦ୍ରାପଡା ଜିଲ୍ଲା ଅବିଭକ୍ତ କଟକ ଜିଲ୍ଲାର କିଛି ଅଂଶକୁ ନେଇ ୧୯୯୩ ମସିହାରେ ଗଠିତ । ୨୦୦୧ ଜନଗଣନା ଅନୁସାରେ ଏହି ଜିଲ୍ଲାର ଜନସଂଖ୍ୟା ପ୍ରାୟ ୧୩ ଲକ୍ଷ, ତନ୍ମଧ୍ୟରୁ ୭ ଲକ୍ଷରୁ ଉର୍ଦ୍ଧ୍ୱ ଲୋକ ୨ଟି ସହରରେ ବାସ କରନ୍ତି । ଏହି ସହରାଞ୍ଚଳବାସୀଙ୍କୁ ଛାଡି ଗ୍ରାମାଞ୍ଚଳର ଜନସଂଖ୍ୟା ୧୪୦୭ଟି ଲୋକ ରହୁଥିବା ଗ୍ରାମରେ ବାସ କରନ୍ତି । ଜିଲ୍ଲାର ୨.୭ ଲକ୍ଷ ପରିବାର ମଧ୍ୟରୁ ୩୨୦୦୦ ପରିବାର ଗୃହମୁଖ୍ୟ ଜଣେ ସ୍ତ୍ରୀ । ଏହି ତଥ୍ୟ ଏବଂ ପରବର୍ତ୍ତୀ ପରିବେଶିତ ତଥ୍ୟ ୨୦୦୧ ଜନଗଣନା ଉପରେ ଆଧାରିତ ।

ଲିଂଗ ଅନୁପାତ ପ୍ରତ୍ୟେକ ଜନଗଣନା ରିପୋର୍ଟର ଅବିଚ୍ଛେଦ୍ୟ ଅଙ୍ଗ । ଭାରତରେ ଏହି ଅନୁପାତ ପ୍ରକାଶ କରାଯାଏ ହଜାରେ ପୁରୁଷ ପିଛା ସ୍ତ୍ରୀଙ୍କ ସଂଖ୍ୟା ହିସାବରେ । ଏହି ହାର ଜାତୀୟ ଏବଂ ରାଜ୍ୟସ୍ତରରେ ଯଥାକ୍ରମେ ୯୩୩ ଏବଂ ୯୭୨ ରହିଥିବାବେଳେ ଏହି ଜିଲ୍ଲା ପାଇଁ ଏହା ୧୦୧୪ ସେହିଭଳି ଗ୍ରାମାଞ୍ଚଳ ପାଇଁ ଏହି ହାର ଦେଶ, ରାଜ୍ୟ ଏବଂ ଏହି ଜିଲ୍ଲା ପାଇଁ ଯଥାକ୍ରମେ ୯୪୬, ୯୮୭ ଏବଂ ୧୦୧୮ ରହିଥିଲା । ସହରାଞ୍ଚଳ ପାଇଁ ସେହି କ୍ରମରେ ଲିଂଗ ଅନୁପାତ ୯୦୦, ୮୯୫ ଏବଂ ୯୪୮ ରହିଥିଲା । ଏହି ଜିଲ୍ଲାରେ ଥିବା ୧୪୦୭ଟି ଗ୍ରାମ ମଧ୍ୟରୁ ୫ଟି ଗ୍ରାମରେ ସ୍ତ୍ରୀ ନଥିବା ରେକର୍ଡ କରାଯାଇଥିଲା । ସେହିଭଳି ୩୪ଟି ଗ୍ରାମରେ ସ୍ତ୍ରୀ ସଂଖ୍ୟା ହଜାରେ ପୁରୁଷରେ ୮୦୦ରୁ କମ୍ ହୋଇଥିବାରୁ ଉଦ୍‌ବେଗଜନିତ ସ୍ଥିତିର ସୂଚନା ଦିଏ । ଅନ୍ୟ ଗ୍ରାମମାନଙ୍କରେ ମଧ୍ୟ ୮୦୧ରୁ ୯୦୦ (୯୮ଟି ଗ୍ରାମ) ଏବଂ ୯୦୧-୯୫୦ ଅନୁପାତ ଥିବା (୨୦୫ଟି ଗ୍ରାମ) ସ୍ତ୍ରୀ ଅନୁପାତ ଦୃଷ୍ଟିରୁ ସଂକଟ ରହିଥିବା କୁହାଯାଇପାରେ । ଲିଂଗ ଅନୁପାତ ୧୦୦୦ରୁ କମ୍ ହେଲେ ସେ ଅଞ୍ଚଳରେ ସ୍ତ୍ରୀମାନଙ୍କ ସ୍ଥିତିର ନ୍ୟୂନତାକୁ ସୂଚାଏ । ଏଣୁ ଏଭଳି ନିରୂପିତ ଅଞ୍ଚଳରେ ସ୍ତ୍ରୀମାନଙ୍କୁ ଗଣନା କରିବା ପାଇଁ ସ୍ୱତନ୍ତ୍ର ଦୃଷ୍ଟି ଏବଂ ପଦକ୍ଷେପ ଆବଶ୍ୟକ, ଯଦ୍ଦ୍ୱାରା ଆଗାମୀ ଜନଗଣନାରେ କ୍ରମଶଃ ହଜି ଯାଇଥିବା ନାରୀ ଭଳି ସ୍ଥିତି ହେବ ନାହିଁ ।

ଜନଗଣନାରୁ ମିଳୁଥିବା ଆଉ ଏକ ପୂର୍ଣ୍ଣ ଲିଂଗ ଅନୁପାତ ହେଲା ୦-୬ ବର୍ଷ ବୟସର ଶିଶୁଙ୍କର । ଏହି ହାର ହଜାରେ ପୁଅରେ ଝିଅ ସଂଖ୍ୟାକୁ ସୂଚାଏ । ଏହା ଦ୍ୱାରା ସମାଜରେ ଝିଅମାନଙ୍କର ସ୍ଥାନ ତାଙ୍କ ପ୍ରତି ସମାଜର ଦୃଷ୍ଟିଭଙ୍ଗୀ ଏବଂ ବ୍ୟବହାରର ଅନୁମାନ କରାଯାଏ । ଲିଂଗ ନିରୂପଣ କରି (ଜନ୍ମ ପୂର୍ବରୁ) ଗର୍ଭପାତ କରିବା ବା ଝିଅପିଲାଙ୍କ ଅଳ୍ପ ବୟସରେ ହତ୍ୟା ଭଳି ଘୃଣ୍ୟ ପ୍ରଥା ଇତ୍ୟାଦି ବିଷୟରେ ସମ୍ୟକ୍ ସୂଚନା ମିଳେ ଲିଂଗ ଅନୁପାତ କମ୍‌ଥିବା ଅଞ୍ଚଳ ନିରୂପଣ କରିବା ଦ୍ୱାରା । ଭାରତ ପାଇଁ ଏହି ହାର ୯୨୭ ରହିଥିଲାବେଳେ ଓଡିଶାରେ ଏହା ୯୫୩ ଏବଂ ଏହି ଜିଲ୍ଲାରେ ୯୪୦ । ଓଡିଶା ତଥା ଏହି ଜିଲ୍ଲା ସ୍ଥିତି ଭାରତ ତୁଳନାରେ ଭଲ ଥିଲେ ମଧ୍ୟ ଉଦ୍‌ବେଗର କାରଣ ରହିଛି । ବିଶେଷକରି ସହରାଞ୍ଚଳରେ ଏହି ହାର ଯଥାକ୍ରମେ ଭାରତ, ଓଡିଶା ଏବଂ ଜିଲ୍ଲାପାଇଁ ୯୦୬, ୯୩୩ ଏବଂ ୯୧୪ ଥିବାରୁ କନ୍ୟା ଭ୍ରୁଣ ହତ୍ୟା ସଂପର୍କରେ ଇଂଗିତ କରେ । ଯଦିଓ ସହରାଞ୍ଚଳରେ ଶିକ୍ଷିତଙ୍କ ସଂଖ୍ୟା ଅଧିକ ଗ୍ରାମାଞ୍ଚଳରେ ସବୁସ୍ତରରେ, ଯଥା- ଭାରତ (୯୩୪), ଓଡିଶା (୯୫୫), ଏହି ଜିଲ୍ଲା (୯୪୨) ସହରାଞ୍ଚଳଠାରୁ ବେଶୀ ଏବଂ ଓଡିଶା ଏବଂ ଏହି ଜିଲ୍ଲାରେ ଭାରତ ତୁଳନାରେ ଅଧିକ । ଏହି ସମୟରେ ସଜାଗ ହେଲେ ସ୍ଥିତିରେ ଉନ୍ନତି ହେବାର ସମ୍ଭାବନା ରହିଛି । ଏକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ହେଲା ଏ ଜିଲ୍ଲାରେ ୧୫ଟି ଗ୍ରାମରେ ଝିଅପିଲା ନାହାନ୍ତି । ସେହିଭଳି ୩୨୪ଟି ଗ୍ରାମରେ ଝିଅମାନଙ୍କ ସଂଖ୍ୟା ଅତିକମ୍ (୮୦୦ରୁ କମ୍) ଏବଂ ୨୪୪ଟି ଗ୍ରାମରେ ୮୦୧ରୁ ୯୦୦ ମଧ୍ୟରେ ଏହି ଅଞ୍ଚଳଗୁଡିକରେ ସ୍ତ୍ରୀ ବିଶେଷକରି ଝିଅଙ୍କ ଗଣନା ପାଇଁ ଅଧିକ ସତର୍କତା ଅବଲମ୍ବନ କରିବା ଆବଶ୍ୟକ ।

ଜନଗଣନାରୁ ସ୍ତ୍ରୀ ପୁରୁଷ ବୈଷମ୍ୟର କିଛି ସୂଚନା ମିଳେ ସାକ୍ଷରତା ହାରରୁ । ୨୦୦୧ ଜନଗଣନା ଅନୁସାରେ ଭାରତର ସ୍ତ୍ରୀ ସାକ୍ଷରତା ହାର ଶତକଡା ୫୩.୭ ଥିବା ବେଳେ ଓଡିଶାର ହାର ୫୦.୫ ଏବଂ ଏହି ଜିଲ୍ଲାର ହାର ୬୬.୮ ରହିଥିଲା । ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ପାର୍ଥକ୍ୟ ଦୃଷ୍ଟି ଆକର୍ଷଣକାରୀ । ଗ୍ରାମାଞ୍ଚଳରେ ପ୍ରତ୍ୟେକ କ୍ଷେତ୍ରରେ ଏହା ଶତକଡା ୭୦ରୁ କମ୍ ରହିଥିବାବେଳେ ସହରାଞ୍ଚଳରେ ଏହା ୭୦ରୁ ବେଶୀ । ସ୍ତ୍ରୀ ଏବଂ ପୁରୁଷ ମଧ୍ୟରେ ଏହି ଜିଲ୍ଲାରେ ବ୍ୟବଧାନ ସାମୂହିକ ଭାବରେ ୨୦.୩ ରହିଥିବା ବେଳେ, ଗ୍ରାମାଞ୍ଚଳରେ ଏହା ୨୦.୭ଏବଂ ସହରାଞ୍ଚଳରେ ୧୪.୩ । ଏହା ଏକ ଉଦ୍‌ବେଗଜନକ ସ୍ଥିତି । ମହିଳାମାନଙ୍କ ଅର୍ଥନୈତିକ କ୍ଷେତ୍ରରେ ଭୂମିକାର ଦୃଢ଼ୀକରଣ କରାଯାଉଛି ନାରୀ ସଶକ୍ତିକରଣ ଯୋଜନା ମାଧ୍ୟମରେ । ଏହି ଦୃଷ୍ଟିର ଅର୍ଥକରୀ କାର୍ଯ୍ୟରେ ମହିଳାମାନଙ୍କ ଭାଗିଦାରୀ ଏକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଯାହା ଜନଗଣନାରୁ ମିଳିଥାଏ । ୨୦୦୧ ଜନଗଣନା ଅନୁସାରେ କାର୍ଯ୍ୟରେ ମହିଳାଙ୍କ ଭାଗିଦାରୀର ହାର ଶତକଡା: ଭାରତ କ୍ଷେତ୍ରରେ ୨୫.୬, ଓଡିଶା ପାଇଁ ୨୪.୭ ଏବଂ ଏହି ଜିଲ୍ଲା ପାଇଁ ୧୦ ଥିଲା । ପ୍ରତ୍ୟେକ କ୍ଷେତ୍ରରେ ଗ୍ରାମାଞ୍ଚଳ ତୁଳନାରେ ସହରାଞ୍ଚଳଗୁଡିକରେ ଏହି ହାର ବହୁତ୍ କମ୍ । ସ୍ତ୍ରୀ ପୁରୁଷ ହାର ମଧ୍ୟରେ ବ୍ୟବଧାନ, ଏହି ଜିଲ୍ଲା ପାଇଁ, ସାମୂହିକ ଭାବରେ ୩୯.୯, ଗ୍ରାମାଞ୍ଚଳରେ ୩୯.୯ ଏବଂ ସହରାଞ୍ଚଳର ପାଇଁ ୪୦.୩ ଥିଲା । ସେହିଭଳି ୭୧ଟି ଗ୍ରାମରେ କୌଣସି ମହିଳା କର୍ମୀ ନଥିବା ଜଣାପଡେ ଏବଂ ୯୨୫ଟି ଗ୍ରାମରେ ସ୍ତ୍ରୀଙ୍କ ଭାଗିଦାରୀ ଶତକଡା ୧୦ ଭାଗରୁ କମ୍ । ଏସବୁ ଅଞ୍ଚଳରେ ଉପଯୁକ୍ତ ସଠିକ୍ ତଥ୍ୟ ସଂଗ୍ରହ ପାଇଁ ଅଧିକ ପ୍ରଚେଷ୍ଟା ଆବଶ୍ୟକ ।

ସାଧାରଣ ଭାବରେ କହିବାକୁ ଗଲେ, ଯଦିଓ ଓଡିଶା ତଥା ଏହି ଜିଲ୍ଲାରେ ଲିଂଗ ଅନୁପାତ ବେଶୀ ତେବେ ସାମାଜିକ (ସାକ୍ଷରତା ହାର ଦୃଷ୍ଟିରୁ) ଏବଂ ଅର୍ଥନୈତିକ (ସ୍ତ୍ରୀ କାର୍ଯ୍ୟରେ ଭାଗିଦାରୀକୁ ଆଖିଆଗରେ ରଖି) ସ୍ଥିତି ଅତି ଭଲ ନୁହେଁ । ଜନଗଣନାରେ ସ୍ତ୍ରୀଙ୍କ ସଂପର୍କରେ ସଂପୂର୍ଣ୍ଣ ତଥ୍ୟ ହାସଲ ପାଇଁ ବିଶେଷ ପ୍ରଚେଷ୍ଟା ଆବଶ୍ୟକ । ଏହା ସଂଗକୁ ବିଭିନ୍ନ ନାରୀ ଅଭିମୁଖୀ ଯୋଜନା ଯେ ଉପଯୁକ୍ତ ହିତାଧିକାରୀ ପାଖରେ ପହଞ୍ଚୁଛି ତା'ର ମୂଲ୍ୟାଙ୍କନ ଏବଂ ପୁଙ୍ଖାନୁପୁଙ୍ଖ ତର୍ଜମା କରି କାର୍ଯ୍ୟାନ୍ୱୟନରେ ପରିବର୍ତ୍ତନ ଦିଗରେ ଜନଗଣନାରେ ସଂଗୃହୀତ ତଥ୍ୟକୁ ଅଧିକରୁ ଅଧିକ ବ୍ୟବହାର କରାଯାଇପାରିବ ।



# ପୁରୁଷ-ସ୍ତ୍ରୀ ଭିତ୍ତିକ ପରିସଂଖ୍ୟାନ

(ଉତ୍ସ: (୨୦୦୧ ଜନଗଣନା)

ରାଜ୍ୟ : ଓଡିଶା (୨୧) ଆଇ. ଡି: ୨୧-୧୦

ଜିଲ୍ଲା : କେନ୍ଦ୍ରାପଡା(୧୦)

## ଜନସାଂଖ୍ୟିକ ଚିତ୍ର

| ରାଜ୍ୟ | | ଜିଲ୍ଲା | |
|---|---|---|---|
| ଜନସଂଖ୍ୟା | ୩୬୮୦୪୬୬୦ | ଜନସଂଖ୍ୟା | ୧୩୦୨୦୦୫ |
| ସହରାଞ୍ଚଳ ଜନସଂଖ୍ୟା | ୫୫୧୭୨୩୮ | ସହରାଞ୍ଚଳ ଜନସଂଖ୍ୟା | ୭୪୧୩୭ |
| ସହର ସଂଖ୍ୟା | ୧୩୮ | ସହର ସଂଖ୍ୟା | ୨ |
| ଉପଜିଲ୍ଲାଙ୍କ ସଂଖ୍ୟା | ୪୯୪ | ଉପଜିଲ୍ଲାଙ୍କ ସଂଖ୍ୟା | ୮ |
| ଲୋକ ବାସକରୁଥିବା ଗ୍ରାମ ସଂଖ୍ୟା | ୪୭୫୨୯ | ଲୋକ ବାସକରୁଥିବା ଗ୍ରାମ ସଂଖ୍ୟା | ୧୪୦୭ |
| ପରିବାର ସଂଖ୍ୟା | ୭୭୩୮୦୬୫ | ପରିବାର ସଂଖ୍ୟା | ୨୭୧୪୭୫ |
| ସ୍ତ୍ରୀ ମୁଖ୍ୟ ଥିବା ପରିବାର ସଂଖ୍ୟା | ୭୭୬୩୨୨ | ସ୍ତ୍ରୀ ମୁଖ୍ୟ ଥିବା ପରିବାର ସଂଖ୍ୟା | ୩୨୫୯୨ |

## ପୁରୁଷ-ସ୍ତ୍ରୀ ଅନୁପାତ (୧୦୦୦ ପୁରୁଷ ପାଇଁ ସ୍ତ୍ରୀ ସଂଖ୍ୟା)

| | ମୋଟ | ଗ୍ରାମାଞ୍ଚଳ | ସହରାଞ୍ଚଳ | ଜିଲ୍ଲାରେ ଥିବା ଗ୍ରାମସଂଖ୍ୟା ଅନୁସାରେ | ସଂଖ୍ୟା |
|---|---|---|---|---|---|
| ଜାତୀୟ ହାର | ୯୩୩ | ୯୪୬ | ୯୦୦ | ଅତିନିମ୍ନ (୮୦୦ ପର୍ଯ୍ୟନ୍ତ) | ୩୪ |
| ରାଜ୍ୟ ହାର | ୯୭୨ | ୯୮୭ | ୮୯୫ | ନିମ୍ନ (୮୦୧-୯୦୦ ପର୍ଯ୍ୟନ୍ତ) | ୯୮ |
| ଜିଲ୍ଲା ହାର | ୧୦୧୪ | ୧୦୧୮ | ୯୪୮ | ମଧ୍ୟମ (୯୦୧-୯୫୦ ପର୍ଯ୍ୟନ୍ତ) | ୨୦୫ |
| | | | | ଅଧିକ (୯୫୦ ରୁ ଅଧିକ) | ୧୦୬୫ |
| | | | | ମିଳିନଥିବା (ସ୍ତ୍ରୀ ସଂଖ୍ୟା) | ୫ |

## ୦-୬ ବର୍ଷର ପୁଅ ଏବଂ ଝିଅଙ୍କର ଅନୁପାତ (୧୦୦୦ ପୁଅପାଇଁ ଝିଅଙ୍କ ସଂଖ୍ୟା)

| | ମୋଟ | ଗ୍ରାମାଞ୍ଚଳ | ସହରାଞ୍ଚଳ | ଜିଲ୍ଲାରେ ଥିବା ଗ୍ରାମସଂଖ୍ୟା ଅନୁସାରେ | ସଂଖ୍ୟା |
|---|---|---|---|---|---|
| ଜାତୀୟ ହାର | ୯୨୭ | ୯୩୪ | ୯୦୬ | ଅତିନିମ୍ନ (୮୦୦ ପର୍ଯ୍ୟନ୍ତ) | ୩୨୪ |
| ରାଜ୍ୟ ହାର | ୯୫୩ | ୯୫୫ | ୯୩୩ | ନିମ୍ନ (୮୦୧-୯୦୦ ପର୍ଯ୍ୟନ୍ତ) | ୨୪୪ |
| ଜିଲ୍ଲା ହାର | ୯୪୦ | ୯୪୨ | ୯୧୪ | ମଧ୍ୟମ (୯୦୧-୯୫୦ ପର୍ଯ୍ୟନ୍ତ) | ୧୫୪ |
| | | | | ଅଧିକ (୯୫୦ ରୁ ଅଧିକ) | ୬୬୪ |
| | | | | ମିଳିନଥିବା (ସ୍ତ୍ରୀ ସଂଖ୍ୟା) | ୧୫ |

## ସ୍ତ୍ରୀ ସାକ୍ଷରତା ହାର (ଶତକଡା)

| | ମୋଟ | ଗ୍ରାମାଞ୍ଚଳ | ସହରାଞ୍ଚଳ | ଜିଲ୍ଲାରେ ଥିବା ଗ୍ରାମସଂଖ୍ୟା ଅନୁସାରେ | ସଂଖ୍ୟା |
|---|---|---|---|---|---|
| ଜାତୀୟ ହାର | ୫୩.୭ | ୪୬.୧ | ୭୨.୯ | ସାକ୍ଷର ମହିଳା ନଥିବା ଗ୍ରାମ | ୭ |
| ରାଜ୍ୟ ହାର | ୫୦.୫ | ୪୬.୭ | ୭୨.୯ | ଅତି ନିମ୍ନ (ଶତକଡା ୩୦ ପର୍ଯ୍ୟନ୍ତ) | ୩୦ |
| ଜିଲ୍ଲା ହାର | ୬୬.୮ | ୬୬.୩ | ୭୫.୩ | ନିମ୍ନ (ଶତକଡା ୩୧-୪୦ ପର୍ଯ୍ୟନ୍ତ) | ୪୫ |
| ଜିଲ୍ଲାରେ ସ୍ତ୍ରୀ ପୁରୁଷ ବ୍ୟବଧାନ (ପୁରୁଷ-ସ୍ତ୍ରୀ ହାର) | ୨୦.୩ | ୨୦.୭ | ୧୪.୩ | ମଧ୍ୟମ (ଶତକଡା ୪୧-୫୦ ) | ୬୧ |
| | | | | ଅଧିକ (ଶତକଡା ୫୦ରୁ ଅଧିକ) | ୧୨୬୪ |

## ସ୍ତ୍ରୀ କର୍ମୀଙ୍କ ହାର (ଶତକଡା)

| | ମୋଟ | ଗ୍ରାମାଞ୍ଚଳ | ସହରାଞ୍ଚଳ | ଜିଲ୍ଲାରେ ଥିବା ଗ୍ରାମସଂଖ୍ୟା ଅନୁସାରେ | ସଂଖ୍ୟା |
|---|---|---|---|---|---|
| | | | | ମହିଳା କର୍ମୀ ନଥିବା ଗ୍ରାମ | ୭୧ |
| ଜାତୀୟ ହାର | ୨୫.୬ | ୩୦.୮ | ୧୧.୯ | ଅତି ନିମ୍ନ (ଶତକଡା ୧୦ ପର୍ଯ୍ୟନ୍ତ) | ୯୨୫ |
| ରାଜ୍ୟ ହାର | ୨୪.୭ | ୨୭.୧ | ୧୦.୦ | ନିମ୍ନ (ଶତକଡା ୧୧-୨୦ ପର୍ଯ୍ୟନ୍ତ) | ୧୬୩ |
| ଜିଲ୍ଲା ହାର | ୧୦.୦ | ୧୦.୨ | ୬.୮ | ମଧ୍ୟମ (ଶତକଡା ୨୧-୩୦ ) | ୭୬ |
| ଜିଲ୍ଲାରେ ସ୍ତ୍ରୀ ପୁରୁଷ ବ୍ୟବଧାନ (ପୁରୁଷ-ସ୍ତ୍ରୀ ହାର) | ୩୯.୯ | ୩୯.୯ | ୪୦.୩ | ଅଧିକ (ଶତକଡା ୩୧-୪୦) | ୫୩ |
| | | | | ଅତି ଅଧିକ (ଶତକଡା ୪୦ ରୁ ଅଧିକ) | ୧୧୯ |


Khorda
50.0
40.0
30.0
20.0
10.0
0.0
17.5
22.0
10.5
41.5
41.8
41.0
Total
Rural
Urban
Total
Rural
Urban
District Average
District Average
Gender Gap in Literacy Rate(%)
Gender Gap in work Participation


Khorda
1000
950
900
850
800
750
700
902
972
817
Total
Rural
Urban
District Average
SEX RATIO


Puri
50.0
40.0
30.0
20.0
10.0
0.0
20.5
21.9
11.6
43.9
44.4
40.7
Total
Rural
Urban
Total
Rural
Urban
District Average
District Average
Gender Gap in Literacy Rate(%)
Gender Gap in work Participation


Puri
1000
980
960
940
920
900
880
968
976
921
Total
Rural
Urban
District Average
SEX RATIO


Ganjam
40.0
35.0
30.0
25.0
20.0
15.0
10.0
5.0
0.0
28.8
30.9
17.6
20.8
17.8
36.0
Total
Rural
Urban
Total
Rural
Urban
District Average
District Average
Gender Gap in Literacy Rate(%)
Gender Gap in work Participation


Ganjam
1020
1000
980
960
940
920
900
998
1011
939
Total
Rural
Urban
District Average
SEX RATIO


Gajapati
40.0
35.0
30.0
25.0
20.0
15.0
10.0
5.0
0.0
26.3
26.9
20.1
6.9
3.9
33.9
Total
Rural
Urban
Total
Rural
Urban
District Average
District Average
Gender Gap in Literacy Rate(%)
Gender Gap in work Participation


Gajapati
1040
1020
1000
980
960
1031
1036
991
Total
Rural
Urban
District Average
SEX RATIO


Kandhamal
33.9
35.0
17.0
10.1
8.5
34.0
Total
Rural
Urban
Total
Rural
Urban
District Average
District Average
Gender Gap in Literacy Rate(%)
Gender Gap in work Participation


Kandhamal
1008
1014
928
Total
Rural
Urban
District Average
SEX RATIO


Baudh
37.2
37.9
22.4
20.3
19.6
33.9
Total
Rural
Urban
Total
Rural
Urban
District Average
District Average
Gender Gap in Literacy Rate(%)
Gender Gap in work Participation


Baudh
984
987
937
Total
Rural
Urban
District Average
SEX RATIO


Sonapur
32.7
33.4
23.6
21.6
20.6
34.4
Total
Rural
Urban
Total
Rural
Urban
District Average
District Average
Gender Gap in Literacy Rate(%)
Gender Gap in work Participation


Sonapur
966
969
927
Total
Rural
Urban
District Average
SEX RATIO


Balangir
32.2
33.7
18.9
26.7
25.3
38.8
Total
Rural
Urban
Total
Rural
Urban
District Average
District Average
Gender Gap in Literacy Rate(%)
Gender Gap in work Participation


Balangir
984
991
934
Total
Rural
Urban
District Average
SEX RATIO


Nuapada
40.0
35.0
30.0
25.0
20.0
15.0
10.0
5.0
0.0
32.7
33.2
22.6
18.6
17.6
35.4
Total
Rural
Urban
Total
Rural
Urban
District Average
District Average
Gender Gap in Literacy Rate(%)
Gender Gap in work Participation


Nuapada
1025
1000
975
950
1007
1009
970
Total
Rural
Urban
District Average
SEX RATIO


Kalahandi
45.0
40.0
35.0
30.0
25.0
20.0
15.0
10.0
5.0
0.0
33.4
34.2
21.2
21.2
20.0
38.5
Total
Rural
Urban
Total
Rural
Urban
District Average
District Average
Gender Gap in Literacy Rate(%)
Gender Gap in work Participation


Kalahandi
1025
1000
975
950
925
900
875
1001
1007
930
Total
Rural
Urban
District Average
SEX RATIO


Rayagada
40.0
35.0
30.0
25.0
20.0
15.0
10.0
5.0
0.0
23.6
23.8
19.4
13.7
10.4
35.7
Total
Rural
Urban
Total
Rural
Urban
District Average
District Average
Gender Gap in Literacy Rate(%)
Gender Gap in work Participation


Rayagada
1050
1025
1000
975
950
925
1028
1038
968
Total
Rural
Urban
District Average
SEX RATIO


Nabarangapur
40.0
35.0
30.0
25.0
20.0
15.0
10.0
5.0
0.0
26.3
26.6
19.6
14.0
12.9
33.8
Total
Rural
Urban
Total
Rural
Urban
District Average
District Average
Gender Gap in Literacy Rate(%)
Gender Gap in work Participation


Nabarangapur
1025
1000
975
950
925
900
875
991
995
928
Total
Rural
Urban
District Average
SEX RATIO


Malkangiri
40.0
35.0
30.0
25.0
20.0
15.0
10.0
5.0
0.0
19.2
19.0
20.0
13.6
12.1
34.9
Total
Rural
Urban
Total
Rural
Urban
District Average
District Average
Gender Gap in Literacy Rate(%)
Gender Gap in work Participation


Malkangiri
1025
1000
975
950
925
900
997
1002
935
Total
Rural
Urban
District Average
SEX RATIO


Koraput
40.0
35.0
30.0
25.0
20.0
15.0
10.0
5.0
0.0
22.9
23.6
17.5
15.8
11.8
36.6
Total
Rural
Urban
Total
Rural
Urban
District Average
District Average
Gender Gap in Literacy Rate(%)
Gender Gap in work Participation


Koraput
1025
1000
975
950
925
900
999
1009
950
Total
Rural
Urban
District Average
SEX RATIO


Interpretation
Houselisting & Housing Census
Empowerment
Adult Female
Female Child
Adult Male
Male Child
Star with 10 points, representing decenial Census
People's participation for inclusive growth
भारत की जनगणना
CENSUS OF INDIA
2011

# ସ୍ୱତନ୍ତ୍ର ଓଡ଼ିଶା ଗଠନ
# ପୂର୍ବ ଏବଂ ଠିକ୍ ପର ଜନଗଣନାରୁ କିଛି ଝଲକ

**ଓ**ଡିଶା ଇତିହାସର ଅଧ୍ୟୟନ ବେଳେ ମନ ଜୁଆର ମଧ୍ୟରେ ବୁଡି ରହିଥାଏ । ଓଡିଶା ରାଜାମାନଙ୍କର ଯୁଦ୍ଧାଭିଜାନ ଏବଂ ସାମ୍ରାଜ୍ୟର ବିସ୍ତାର କାହାଣୀ ପଢିଲାବେଳେ ହଠାତ୍ ଭଙ୍ଗାର ଅନୁଭବ ହୁଏ ଇତିହାସର ପୃଷ୍ଠା ଯେତେବେଳେ ଖୋଲେ, ଓଡିଶାର ଚିତ୍ର ବିଖଣ୍ଡିତ ଏବଂ ବିଭିନ୍ନ ପ୍ରଦେଶର ଅଂଶ ବିଶେଷ ଭାବରେ । ଓଡିଆ ଭାଷା ଛଟପଟ ହେଉଥାଏ । ବିଭିନ୍ନ ପ୍ରଦେଶର ଋପ ଭିତରେ ଏବଂ ନିଜ ଅସ୍ତିତ୍ୱ ହରାଇବା ଭୟରେ ଜୁଡୁବୁଡୁ ହୋଇ ଏହି ଅସହାୟ ସ୍ଥିତିରୁ ଜନ୍ମ ନିଏ ଓଡିଆ ଭାଷା ବଞ୍ଚାଅ ଆନ୍ଦୋଳନ ଏବଂ ଓଡ଼ିଶାର ଅସ୍ତିତ୍ୱର ନବୀକରଣ ପାଇଁ ଜନ ପ୍ରଚେଷ୍ଟା ୧୯୩୧ ଜନଗଣନା ରିପୋର୍ଟରେ ଏହି ସ୍ଥିତିର କିଛିଟା ଉଦାହରଣ ମିଳେ, ଏପରି ଭାବରେ–




"Politics were also troublesome in the leaders of Orissa where a pan Oriya propaganda, carried in to an extent calculated to frustrate its own purposes, engendered a corresponding counter propaganda all detriment at letrimentat to Census taking. Special measures were needed in Madras and much additional work caused to the superintendent of that province and in a less degree also to the superintends of Bengal, Bihar & Orissa & Central Provinces."

In Orissa proper the population in more nearly allied to that of the lower Bengal, but has a distinctive culture of its area. The Chottanagpur plateau and the Santal Parganas are primarily the habitat of the comparatively primitive munda speaking tribes and other speaking dravidian langauges but closely allied them in race. Sambalpur & Anugul are not dissmilar and the inhabitants of the feudatry states are also of the same kind, though oriya replaces Hindi in the southrn slopes of the plateau as the medium of the communication with more civilised world."

J. H. Hutton, Census Commissioner and RGI, India, 1931

ବିହାର ଓଡିଶାର ଜନଗଣନା ସୁପରିନ୍‌ଟେଣ୍ଡେଣ୍ଟ (W.M.Yeats) ସେଇ ସମୟରେ ଲେଖିଥିଲେ, " Among the more educated classes, particularly in urban areas, some appreciation was shown of the hearing of the census figures on the impending constitutional changes. The prospect of creation of a separate Orissa province and the question whether such a province should include the whole or any part of Singhbhum district were responsible lively

concern in the returns of caste, language etc. in that locality."

ଉପର ଉଦ୍ଧୃତ ଉକ୍ତିଗୁଡିକରୁ ଜଣାପଡେ ସ୍ୱତନ୍ତ୍ର ଓଡିଶା ସଂପର୍କରେ ଚିନ୍ତନ ଏବଂ ଆନ୍ଦୋଳନର ସୂତ୍ରପାତ ହୋଇଥିଲା ଓଡିଶାର ଭାଷା ଓ ସଂସ୍କୃତିର ବିଶେଷତ୍ୱ ପ୍ରତି ଦୃଷ୍ଟି ଆକର୍ଷଣ କରି ବ୍ରିଟିଶ ଶାସନର । ବ୍ରିଟିଶ ଶାସକମାନେ ମଧ୍ୟ ଏହି ସ୍ୱାତନ୍ତ୍ର୍ୟର ହୃଦ୍‌ବୋଧ କରିଥିଲେ । ଜନସଂଖ୍ୟାର ବିଭିନ୍ନ ଜନଗଣନାର ସ୍ଥିତିର ବିଶ୍ଳେଷଣ କଲାବେଳେ ଏହାର କିଛିଟା ଝଲକ୍ ୧୯୩୧ ଜନଗଣନାରୁ ଉଦ୍ଧୃତ କରି ଏ ବିଷୟରେ ଅଧିକ ଆଲୋକପାତ କରିବାର ପ୍ରୟାସ ଏଠାରେ ପ୍ରାସଂଗିକ । ଉଦ୍ଧୃତିଗୁଡିକ ବିହାର-ଓଡିଶା ଜନଗଣନା ରିପୋର୍ଟ ୧୯୩୧ର ଓଡିଶା ଡିଭିଜନ୍ ସଂପର୍କିତ ବିଭିନ୍ନ ଜନଗଣନା ସମୟ ମଧ୍ୟରେ ଜନବୃଦ୍ଧି ସଂପର୍କରେ କୁହାଯାଇଥିଲା, "ଓଡିଶାରେ ୧୮୮୧-୯୧ ଦଶନ୍ଧିରେ, ଯେଉଁ ବହୁଳ ଜନବୃଦ୍ଧି ହୋଇଥିଲା, ପ୍ରକୃତରେ ଜନବୃଦ୍ଧିର କାରଣ ଏହି ଭାଗରେ ୧୮୬୬ର ଦୁର୍ଭିକ୍ଷ ସମୟର ଜନକ୍ଷୟର ସ୍ଥିତିକୁ ଉନ୍ନତ କରିବାରେ ପ୍ରଚେଷ୍ଟା ଜାରି ରହିଛି ।" ୧୮୯୧-୧୯୦୧ ମସିହା ମଧ୍ୟରେ ଓଡିଶାର ଏଭଳି ବୃଦ୍ଧି ସେହି ହାରରେ, ଅବାରିତ ଭାବରେ ବନ୍ୟା ଏବଂ ଦୁର୍ଭିକ୍ଷଜନକ ପରିସ୍ଥିତି ଗୁରୁତର ହେବା ସତ୍ତ୍ୱେ ପରିଲକ୍ଷିତ ହୋଇଥିଲା ।

୧୯୦୧-୧୯୧୧, ଓଡିଶାର ପ୍ରଗତି ବାଧାପ୍ରାପ୍ତ, ହୋଇଥିଲା, ବନ୍ୟା ରୋଗ ଏବଂ ଅଭାବ ଦ୍ୱାରା । ୧୯୧୧-୨୧ ଦଶନ୍ଧିରେ ଦେଶରେ ଜନଗଣନା ଜନସଂଖ୍ୟା ଇନ୍‌ଫ୍ଲୁଏଞ୍ଜାର ସଂକ୍ରାମକ ପରିସ୍ଥିତି (୧୯୧୮ ମସିହାର) ଦ୍ୱାରା ସଂପୂର୍ଣ୍ଣ ପ୍ରଭାବିତ ହୋଇଥିଲା । ଆଶ୍ଚର୍ଯ୍ୟର କଥା, ଓଡିଶାରେ ଏହି ରୋଗର ଉପଦ୍ରବ ଅପେକ୍ଷାକୃତ କମ୍ ଅନୁଭୂତ ହୋଇଥିଲା ଅନ୍ୟ ରାଜ୍ୟଙ୍କ ତୁଳନାରେ - କେଉଁଠି ଜନସଂଖ୍ୟାର ବୃଦ୍ଧି କମ୍ ହୋଇଥିଲା ଏହି ଦଶନ୍ଧିରେ । ଏହାର କାରଣ ଓଡିଶା ଓ ବିହାର । ଓଡିଶାର ଅନ୍ୟ ଡିଭିଜନ୍ ତୁଳନାରେ କୃଷିଭିତ୍ତିକ ଦୁର୍ବିପାକଦ୍ୱାରା, ଯାହାକି ୧୯୧୮ରେ ବର୍ଷା ଅଭାବରୁ ପରିଲକ୍ଷିତ ହୋଇଥିଲା ପରବର୍ତ୍ତୀ ବର୍ଷରେ । ଅଧିକତଃ ଓଡିଶା ଅଧିକ କ୍ଷତି କଲାଭଳି ବନ୍ୟା ଦ୍ୱାରା ଉପଦ୍ରୁତ ହୋଇଥିଲା । ଏହି ଡିଭିଜନର ପ୍ରଗତିକୁ ଗ୍ରହଣ କରିବାର ଶକ୍ତି, ଯେହେତୁ ଗୋଟିଏ ଶସ୍ୟ ଚାଉଳ ଉପରେ ପ୍ରାୟ ସଂପୂର୍ଣ୍ଣଭାବରେ ନିର୍ଭରଶୀଳ । ତେଣୁ ଅନ୍ୟ ଡିଭିଜନ ତୁଳନାରେ କମ୍ । ସେହି ପରିପ୍ରେକ୍ଷୀରେ, ବିହାର ଓଡିଶା ପ୍ରଦେଶର ଅନ୍ୟ ତିନି ପ୍ରାକୃତିକ ଡିଭିଜନ ଏହି ଦଶନ୍ଧିବେଳକୁ ପୁନର୍ଗଠନ ଦିଗରେ ପ୍ରଗତି କଲାବେଳେ ଓଡିଶାରେ ସେହି ପ୍ରଗତିର ଗତି କମ୍ ଥିଲା ।

ପ୍ରାକ୍ ୧୯୩୧ ମସିହାର ଜନସଂଖ୍ୟା ସଂପର୍କୀୟ କିଛି ଉଦ୍ଧୃତି ପରେ, ୧୯୩୧ମସିହାର କିଛି ଚିତ୍ର ଓଡିଶାର ସ୍ୱତନ୍ତ୍ର ଚାରିତ୍ରିକ ବିଶେଷତ୍ୱ ଅଧିକ ଆଲୋକପାତ କରିବ । ୧୯୩୧ ଜନଗଣନା ଏବଂ ୧୯୪୧ ଜନଗଣନା ସଂପର୍କରେ ତତ୍କାଳୀନ ଜନଗଣନା କମିଶନର ଉଲ୍ଲେଖ କରିଥିଲେ, ୧୯୩୧ ମସିହାର ଜନଗଣନା ରିପୋର୍ଟ ପୂର୍ବ ଜନଗଣନାମାନଙ୍କ ତୁଳନାରେ ସବୁ ଦୃଷ୍ଟିରୁ ବେଶୀ ସଂପୂର୍ଣ୍ଣତା ହାସଲ କରିଥିଲା । ତେଣୁ କୁହାଯାଏ ୧୯୮୧ ମସିହା ପରଠାରୁ ପ୍ରସ୍ତୁତ ହୋଇଥିବା ପ୍ରତ୍ୟେକ ଦଶନ୍ଧିର ଜନଗଣନା ରିପୋର୍ଟମାନଙ୍କ ମଧ୍ୟରେ ଶୀର୍ଷରେ ରହିଥିଲା । ପରବର୍ତ୍ତୀ ଜନଗଣନା, ୧୯୪୧ ମସିହାର, ବିଶ୍ୱ ଯୁଦ୍ଧ ସଂପର୍କିତ ନିଅଣ୍ଟିଆ ଅର୍ଥନୀତିଦ୍ୱାରା ପ୍ରଭାବିତ ହୋଇଥିଲା । ତେଣୁ ବ୍ରିଟିଶ ଉପନିବେଶ ସମୟରେ ଭାରତର ୧୯୩୧ ଜନଗଣନା ସର୍ବଶ୍ରେଷ୍ଠ ବୋଲି ମନେ କରାଯାଏ । ଉପର ଲିଖିତ ଉଦ୍ଧୃତିର ବ୍ୟାପକତା ଏଭଳି ମତକୁ ପ୍ରତିପାଦିତ କରେ । ଅଧିକ ଆଲୋକପାତ କରିବା ପାଇଁ ୧୯୩୧ ରିପୋର୍ଟରୁ କିଛି ଏବଂ ୧୯୪୧ ଜନଗଣନାରୁ କିଛି ପ୍ରସ୍ତୁତ ଏଠାରେ ଦିଆଗଲା ।

୧୯୩୧ ରିପୋର୍ଟରେ ୨୬.୦୨.୧୯୩୧ରେ ହୋଇଥିବା ଜନଗଣନାର ଚିତ୍ର ଦିଆଯାଇଥିଲା । ବିହାର ଓ ଓଡିଶାର ପ୍ରାଦେଶିକ ରିପୋର୍ଟରେ ଅନ୍ୟ ରିପୋର୍ଟ ତୁଳନାରେ ଏହି ରିପୋର୍ଟରେ ଜନଗଣନା ଦ୍ୱାରା ସଂଗୃହୀତ ତଥ୍ୟ ଉପରେ ପର୍ଯ୍ୟବସିତ ହୋଇଥିଲା । ଯଦିଓ ସାମାଜିକ, ଅର୍ଥନୈତିକ ତଥା ଅନ୍ୟ ପ୍ରଗତି ଉପରେ ବେଳେ ବେଳେ ମତାମତ ଦିଆ ଯାଇଥିଲା ୧୯୩୧ ଜନଗଣନା ରିପୋର୍ଟର ଏକ ବିଶେଷ ସଂପୃକ୍ତି ହେଲା ଅତି ଆଦିମ ଜନଜାତିଗୁଡିକର ରାଜ୍ୟର ବିଭିନ୍ନ ଅଞ୍ଚଳରେ ବିସ୍ତାର ଏବଂ ପୂର୍ବ ପଚାଶ ବର୍ଷ ମଧ୍ୟରେ ସେମାନଙ୍କ ସଂଖ୍ୟା ବୃଦ୍ଧି ସମ୍ବନ୍ଧରେ । ଭାଷାଭିତ୍ତିକ ସାରଣୀକୁ ଅଧିକ ବ୍ୟାପ୍ତ କରାଯାଇଥିଲା । ପ୍ରଥମ ଥର ପାଇଁ ପ୍ରଦେଶରେ ପ୍ରଚଳିତ ଦ୍ୱିଭାଷୀ ପରିସ୍ଥିତିର ସୂଚନା ଦେବା ପାଇଁ । ଏହି ଦ୍ୱିଭାଷିକ ତତ୍ତ୍ୱ ବିଶେଷ ଭାବରେ ଦୃଷ୍ଟିଗୋଚର ହୋଇଥିଲା, ଛୋଟନାଗପୁର ଉପତ୍ୟକା ସାଂସ୍କୃତିକ ଅଞ୍ଚଳ କ୍ଷେତ୍ରରେ, ୧୯୩୧ ଜନଗଣନାର ଆଉ ଗୋଟିଏ ନୂତନ ପ୍ରସ୍ଥ ହେଲା ସାମାଜିକ ଏବଂ ଭାଷାଗତ ରେଖା ଚିତ୍ର । ରିପୋର୍ଟରେ କୁହାଯାଇଥିଲା:

"To a lesser extant, there are, undoubtedly errors in the statistics dealing with such matters as litereacy, civil condition and caste."

**xxxxx**

"But in actual fact, one of the outstanding features of the present census is relative decline of females."

ଛୋଟନାଗପୁର ଉପତ୍ୟକା, ଯାହାର ଅଧିକାଂଶ ଅଂଶ ଓଡିଶାରେ ସଂପର୍କିତ ଥିଲା, ସେ ବିଷୟରେ କିଛି ଉଦ୍ଧୃତି ଓଡିଶାର ସ୍ୱତନ୍ତ୍ର ପ୍ରଦେଶ ଗଠନ ସଂପର୍କରେ ଆଲୋକପାତ କରିବ, ତେଣୁ ଏଠାରେ ଦିଆଗଲା ଆନୁଦିତ ରୂପରେ ଛୋଟନାଗପୁର ଉପତ୍ୟକା ଏଭଳି ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ଯାହାକି ପ୍ରଦେଶକୁ ଗୌରବାନ୍ୱିତ କରୁଥିଲା । ଚାଷ କାର୍ଯ୍ୟ ଉପତ୍ୟକାର ବହୁଳଭାବେ ପରିଲକ୍ଷିତ ହେଉଥିଲା । ଉପତ୍ୟକାର ପ୍ରଚୁର ପରିମାଣର ଖଣିଜ ସଂପଦ ଯାହାକି ପ୍ରାୟତଃ ଅବ୍ୟବହୃତ ଥିଲା । ଅଳ୍ପ ଜନସଂଖ୍ୟା ବିସ୍ତୃତ ଅଞ୍ଚଳରେ ଏଠାରେ ରହିଥିଲେ ଏବଂ ଅନେକ ଅଣଆର୍ଯ୍ୟ ଜନଜାତି ଏହି ଅଞ୍ଚଳରେ ବସବାସ କରୁଥିଲେ । ଏହି ଭୌଗଳିକ ଭୂମି ଏବଂ ବଂଗୋପସାଗର ମଧ୍ୟରେ ଓଡିଶାର ତୃତୀୟ ଅଞ୍ଚଳ ରହିଥିଲା । ଏହା ଦେଶର ତଳି ଅଞ୍ଚଳ ଯାହା ମହାନଦୀ, ବୈତରଣୀ ଏବଂ ବ୍ରାହ୍ମଣୀ ନଦୀ ଦ୍ୱାରା ପରିବନ୍ଧିତ ତ୍ରିକୋଣଭୂମି ଯାହାକି ବହୁଳ କ୍ଷତି କରୁଥିବା ବନ୍ୟା ଦ୍ୱାରା ଉପଦ୍ରୁତ ଥିଲା । ଓଡିଶା ସବୁବେଳେ ଏକୁଟିଆ ହୋଇ ଯାଉଥିଲା, କାରଣ ଓଡିଶା ଅଞ୍ଚଳ ଏବଂ ବିହାର ଓଡିଶା ପ୍ରଦେଶରେ ଅନ୍ୟ ଅଞ୍ଚଳ ମଧ୍ୟରେ ଯାତାୟାତ ସଂପର୍କ ଅତି କମ୍ ରହିଥିଲା ।

ସେତେବେଳର ଜନଗଣନା ରୋପର୍ଟରେ ଉଲ୍ଲେଖ ଅଛି, ପୁନଶ୍ଚ ଦେଶୀୟ ରାଜ୍ୟମାନଙ୍କ ସଂପର୍କରେ ଏହା କୁହାଯାଇପାରେ ଯେ ପ୍ରଶାଶନିକ ଦୃଷ୍ଟିରୁ, ପୁରୁଣା ପାର୍ଥକ୍ୟ ଯାହାଥିଲା, ଛୋଟନାଗପୁର ଦେଶୀୟରାଜ୍ୟ (ଷଢ଼େଇକଳା ଓ ଖରସୁଆଁ କେବଳ) ଏବଂ ଓଡିଶା ଦେଶୀୟ ରାଜ୍ୟ (ଯାହା ଅନ୍ୟ ଚବିଶଟି ଦେଶୀୟ ରାଜ୍ୟ ଦ୍ୱାରା ଗଠିତ) ଏବେଠୁ ଓଡିଶା ଦେଶୀୟ ରାଜ୍ୟ ରୂପେ ପରିଗଣିତ ହେବ । ତା ସଂଗକୁ ଏହା କୁହାଯାଇପାରେ, ଷଢେଇକଳା ଏବଂ ଖରସୁଆଁ ଯେ କେବଳ ଅନ୍ୟ ରାଜ୍ୟଗୁଡିକରୁ ବିଛିନ୍ନ ରହିଛନ୍ତି ମଝିରେ ରହିଥିବା ସିଂହଭୂମ ଜିଲ୍ଲାଦ୍ୱାରା ଯାହାକି ବ୍ରିଟିଶ ସାମ୍ରାଜ୍ୟର ଜିଲ୍ଲା ଥିଲା, ତାହା ନୁହେଁ, ନୃତାତ୍ତ୍ୱିକ ତଥା ଭାଷାଗତ ଏବଂ ଅନ୍ୟାନ୍ୟ ଦୃଷ୍ଟିରୁ, ସେମାନେ ଅନ୍ୟମାନଙ୍କ ତୁଳନାରେ ବାରି ହୋଇପାରନ୍ତି ।

ଜନଗଣନା ୧୯୩୧ର ରିପୋର୍ଟରୁ କିଛି ଉଦ୍ଧୃତି ପ୍ରତିପାଦନ କରେ ଓଡିଶାର ଜନସାଂଖିକ, ସାଂସ୍କୃତିକ ଓ ଭାଷାଗତ ବିଶେଷତ୍ୱ ଯାହାକି ପରବର୍ତ୍ତୀ ସମୟରେ ସ୍ୱତନ୍ତ୍ର ଓଡିଶା ଗଠନର ଆଧାର ହୋଇଥିଲା । ଓଡିଶାର ସ୍ୱାତନ୍ତ୍ର୍ୟ ହୃଦ୍‌ବୋଧ କରି, ବ୍ରିଟିଶ ସରକାର ଓଡିଶାର ବିଭିନ୍ନ ଅଞ୍ଚଳକୁ ଏକତ୍ରିତ କରି ସ୍ୱତନ୍ତ୍ର ଓଡିଶା ପ୍ରଦେଶ କଲେ ୧ ଏପ୍ରିଲ୍ ୧୯୩୬ରେ । ଭାଷା ଭିତ୍ତିରେ ଗଠିତ ପ୍ରଥମ ପ୍ରଦେଶ ଭାବରେ ପରିଚୟ ପ୍ରଦାନ କରିବାରେ ସମ୍ବଲପୁର ଅଞ୍ଚଳର ଭଷା ଆନ୍ଦୋଳନର ମଧ୍ୟ ବିଶେଷ ସ୍ୱୀକୃତି ଓ ଅବଦାନ ରହିଥିଲା । ସ୍ୱତନ୍ତ୍ର ଓଡିଶା ଗଠନ ପରେ ପ୍ରଥମ ଜନଗଣନା ଆସିଥିଲା ୧୯୪୧ ମସିହାରେ । ଆଗରୁ କୁହାଯାଇଛି, ଏହି ଜନଗଣନାରେ ସଂଗୃହୀତ ତଥ୍ୟର ବହୁଳ ବ୍ୟବହାର ହୋଇ ପାରିନଥିଲା କିମ୍ବା ଯୁଦ୍ଧ ସମୟରେ ଅର୍ଥନୈତିକ ପ୍ରତିବନ୍ଧକ ହେତୁ । ଯାହା କିଛି ବର୍ଣ୍ଣନା ଏବଂ ପାଣ୍ଡୁଲିପିରୁ ମିଳିଥିବା ତଥ୍ୟକୁ କିଛି ପରିବେଶିତ ହୋଇଛି ଏଠାରେ ଜନ ସାଧାରଣଙ୍କ ଅଗତି ପାଇଁ ଓଡିଶା ପ୍ରଦେଶ ଗଠନ ପରେ, ୧୯୪୧ ଜନଗଣନାର ତଥ୍ୟ ଅନୁସାରେ ନିମ୍ନଲିଖିତ ଅଞ୍ଚଳ ହିସାବରେ ପରିଚିତ ଥିଲା । (ପରବର୍ତ୍ତୀ ସମୟରେ ରାଜ୍ୟ ପୂନର୍ଗଠନ ଦ୍ୱାରା, ଏହା ଅଧିକ ସୁସଂଗଠିତ ହୋଇଥିଲା । ବ୍ରିଟଶ ଅଞ୍ଚଳ କଟକ, ବାଲେଶ୍ୱର, ପୁରୀ, ସମ୍ବଲପୁର, ଗଂଜାମ (ଗଂଜାମ ସମତଳ ଏବଂ ଗଂଜାମ ଏଜେନ୍‌ସି), କୋରାପୁଟ ।

**ଦେଶୀୟ ରାଜ୍ୟ**

୧. ବଙ୍ଗରାଜ୍ୟ - ମୟୂରଭଂଜ

୨. ଛତିଶଗଡ ରାଜ୍ୟ - ପାଟଣା, କଳାହାଣ୍ଡି

୩. ଓଡିଶା ରାଜ୍ୟ - ଆଠଗଡ, ତାଳଚେର, ନୀଳଗିରି, କେନ୍ଦୁଝର, ପାଲଲହଡା, ଆଠମଲ୍ଲିକ, ଢେଙ୍କାନାଳ, ହିନ୍ଦୋଳ, ନରସିଂହପୁର, ବଡମ୍ବା, ତିଗିରିଆ, ଖଣ୍ଡପଡା, ନୟାଗଡ, ରଣପୁର, ଦଶପଲ୍ଲା, ବୌଦ୍ଧ, ବାମଣ୍ଡା, ରେଢାଖୋଲ, ସୋନପୁର, ବଣେଇ ।

ଓଡିଶା ପ୍ରଦେଶ ସୃଷ୍ଟି ହୋଇଥିଲା, ମାଡ୍ରାସ୍, ବିହାର ଓ ଓଡିଶା ଏବଂ ମଧ୍ୟପ୍ରଦେଶ (ସି.ପି.)ର କିଛି ଅଂଶକୁ ନେଇ ଯାହାକି ଉପର ଲିଖିତ ଅଞ୍ଚଳଗୁଡିକର ପାଶ୍ଚାତ୍ ଭୂମି ବିଷୟରେ କିଛି ସୂଚନା ଦିଏ । ଗଣନାକୁ ସହଜ କରିବା ପାଇଁ ପ୍ରାଦେଶିକ

ଜନଗଣନା ସୁପରିନଟେଣ୍ଡେଣ୍ଟମାନଙ୍କୁ ତାଙ୍କ ପ୍ରଦେଶ ମଧ୍ୟରେ କିମ୍ବା ତାକୁ ଲାଗି ରହିଥିବା ଦେଶୀୟ ରାଜ୍ୟମାନଙ୍କର ଦାୟିତ୍ୱ ଦିଆଯାଇଥିଲା ଏବଂ ପ୍ରାଦେଶିକ ରିପୋର୍ଟରେ ସେହି ରାଜ୍ୟମାନଙ୍କର ତଥ୍ୟ ଦିଆଯାଇଥିଲା । ସମଗ୍ର ବ୍ରିଟିଶ ରାଜ୍ୟର ସାରଣୀ ଏବଂ ପ୍ରାଦେଶିକ ସାରଣୀ ମଧ୍ୟରେ କିଛିଟା ପାଥର୍କ୍ୟ ପରିଲକ୍ଷିତ ହୋଇ ପାରେ ବୋଲି ତତ୍କାଳୀନ ଜନଗଣନା କମିଶନର ଲେଖିଛନ୍ତି, ସମଗ୍ର ଭାରତ ପାଇଁ ତିଆରି ରିପୋର୍ଟରେ । ସେ ପୁଣି ଲେଖିଛନ୍ତି, କୌଣସି ସମୟରେ ଏବଂ କୌଣସି ଦେଶରେ ଜନଗଣନା ପ୍ରତି କ୍ଷୁଦ୍ର ଅଞ୍ଚଳପାଇଁ ସଠିକ୍ ସଂଖ୍ୟା ଦେବ, ଏହି ଧାରଣା ମନରୁ ଦୂର କରିଦେବା ଉଚିତ । ଆହୁରି ସେ ଲେଖିଛନ୍ତି, ବେଳେ ବେଳେ ସାରା ଦେଶ ପାଇଁ ତିଆରି ହୋଇଥିବା ରିପୋର୍ଟ ଏବଂ ପ୍ରାଦେଶିକ ରିପୋର୍ଟ ମଧରେ କିଛି ଅମେଳ ରହିପାରେ । ଏହି ସବୁକୁ ଆଖି ଆଗରେ ରଖି ୧୯୪୧ ଜନଗଣନାର କିଛି ତଥ୍ୟ ଏଠାରେ ଦିଆଗଲା ।

ଓଡିଶା ପ୍ରଦେଶର ୧୯୪୧ ଜନଗଣନା ଭାରତର ରିପୋର୍ଟ ଅନୁସାରେ ଓଡିଶା ପ୍ରଦେଶର କ୍ଷେତ୍ରଫଳ ଥିଲା ୩୨,୧୯୮ ବର୍ଗମାଇଲ ଏବଂ ଓଡିଶାର ଦେଶୀୟ ରାଜ୍ୟ ଏବଂ ଏଜେନ୍ସି ଅଞ୍ଚଳର କ୍ଷେତ୍ରଫଳ ଥିଲା ୧୮,୧୫୧ ବର୍ଗମାଇଲ ସେହି ଅଂଚଳର ସହର ସଂଖ୍ୟା ଯଥାକ୍ରମେ ୧୭ ଏବଂ ୯ ଥିଲା । ଗ୍ରାମ ସଂଖ୍ୟା ଥିଲା ସେହି କ୍ରମରେ ୨୬,୬୫୩ ଏବଂ ୧୧,୮୫୪ ଜନସଂଖ୍ୟା ରହିଥିଲା ୩,୦୨. ୭୩୧ (ମୋଟ) ୬୧,୯୩୧ (ସହରାଞ୍ଚଳ) ଏବଂ ୨,୯୬୧,୮୦୦ ପୁରୁଷଙ୍କ ସଂଖ୍ୟା ଦେଖିଲେ ଓଡିଶାର ମୋଟ ସଂଖ୍ୟା ଥିଲା ୪,୨୧୮, ୧୨୧ ଏବଂ ଏହା ସହରାଞ୍ଚଳରେ ୧୬୮,୪୧୧ ଥିଲା ବେଳେ ଗ୍ରାମାଞ୍ଚଳରେ ୪,୦୪୯, ୭୧୦ ରହିଥିଲା । ସେହିପରି ଦେଶୀୟ ରାଜ୍ୟ ଏବଂ ଏଜେନ୍ସି ଅଞ୍ଚଳରେ ପୁରୁଷ ସଂଖ୍ୟା ଯଥାକ୍ରମେ ୪୮୬, ୭୨୪ (ମୋଟ), ୩୧,୬୬୭ (ସହର), ୧,୪୫୯,୦୫୭ (ଗ୍ରାମାଞ୍ଚଳ) ରହିଥିଲା। ସ୍ତ୍ରୀ ସଂଖ୍ୟା ଓଡିଶା ପ୍ରଦେଶରେ ୪,୫୧୦,୪୨୩ (ମୋଟ), ୧୫୨,୩୯୦ (ସହରାଞ୍ଚଳ) ଏବଂ ୪,୩୫୮,୦୩୩ ରହିଥିଲା । ଦେଶୀୟ ରାଜ୍ୟ ଏବଂ ଏଜେନ୍ସିସ୍ ଅଞ୍ଚଳରେ ସ୍ତ୍ରୀ ସଂଖ୍ୟା ଯଥାକ୍ରମେ ୧,୫୩୫,୦୦୭, ୩୦,୨୬୪ ଏବଂ ୧,୫୦୪, ୭୪୩ ରହିଥିଲା । ଏ ପରିସଂଖ୍ୟାନ ଦିଆଗଲା ସେ ସମୟରେ ଚିତ୍ର ଦେବା ପାଇଁ ଯାହାକି ପୃଥକ୍ ଭାବେ ଦିଆଯାଉଥିଲା ବ୍ରିଟିଶ ଶାସନରେ ଥିବା ଓଡିଶା ପାଇଁ ଏବଂ ଦେଶୀୟ ରାଜ୍ୟ ଏବଂ ଏଜେନ୍ସି ଅଞ୍ଚଳ ଦେଖି ଆଗରୁ ୧୯୪୧ର ପ୍ରାଦେଶିକ ସ୍ତର ତଥ୍ୟର ସୀମିତ ପ୍ରକୃତି ବିଷୟରେ କୁହାଯାଇଛି । ଜନସଂଖ୍ୟାର ଗ୍ରାମ ଓ ସହର ଭେଦ ତଥା ଲିଂଗଗତ ଭିନ୍ନତାର ପରିବେଶତା କରାଯାଇଛି । ସମ୍ୟକ୍ ଧାରଣା ଦେବାପାଇଁ ଯଦ୍ଦ୍ୱାରା କି ତତ୍କାଳୀନ ଓ ସାଂପ୍ରତିକ ଓଡିଶାର ଜନସାଂଖିକ ସ୍ଥିତି ସଂପର୍କରେ କିଛି ଅବଧାରଣା କରିବାକୁ ସାହାଯ୍ୟ କରିବ । ଏହାମଧ୍ୟ ହୃଦ୍‌ବୋଧ କରାଇବ ସେହି ସମୟର ଜନଗଣନାର ଆକାର ଏବଂ ପ୍ରକାର ବର୍ତ୍ତମାନ ତୁଳନାରେ କ'ଣ ଥିଲା ।

୧୯୩୧ ମସିହାରେ ସ୍ତ୍ରୀ ପୁରୁଷ ଅନୁପାତ ହଜାରେ ପୁରୁଷରେ ଓଡିଶା ପ୍ରଦେଶ ପାଇଁ ୧୦୮୭ ସ୍ତ୍ରୀ ହୋଇଥିବା ବେଳେ ୧୯୪୧ ମସିହାରେ ଏହା ୧୦୬୯ ଥିଲା । ସେହିପରି ଦେଶୀୟ (ଓଡିଶା ପ୍ରଦେଶ ସଂପର୍କୀତ) ରାଜ୍ୟଗୁଡିକରେ, ଏହି ଅନୁପାତ ୧୯୩୧ରେ ୧୦୨୪ ସ୍ତ୍ରୀ ଏବଂ ୧୯୪୧ ମସିହାରେ ଏହା ୧୦୩୧ ସ୍ତ୍ରୀ ହଜାରେ ପୁରୁଷରେ । ପୁନଶ୍ଚ ୧୯୪୧ରେ ୧୦୦ ବର୍ଗମାଇଲରେ ଓଡିଶା ପ୍ରଦେଶରେ ୫୮୪୬ଟି ଗୃହ ଥିଲାବେଳେ, ଦେଶୀୟ ରାଜ୍ୟଗୁଡିକରେ ଏହି ସଂଖ୍ୟା ୩୪୦୮ ଏବଂ ହଜାରେ ଗୃହପିଛା ଲୋକସଂଖ୍ୟା ଓଡିଶାର ପ୍ରଦେଶରେ ୪୬୩୭ ହୋଇଥିବା ବେଳେ, ଏହା ଦେଶୀୟ ରାଜ୍ୟଗୁଡିକରେ ୪୮୮୮ ଥିଲା । ଏହି ତଥ୍ୟ ଭାରତ ପାଇଁ ରିପୋର୍ଟରୁ ମିଳିଥାଏ । ୧୯୪୧ ଜନଗଣନାରୁ କିଛି ଅଧିକ ତଥ୍ୟ ଏଇଠି ଦିଆଗଲା, ଅପ୍ରକାଶିତ ପାଣ୍ଡୁଲିପିକୁ ଆଧାରକରି । ଏହା ସୀମିତ ଦେଶୀୟ ରାଜ୍ୟ ଏବଂ ପ୍ରଦେଶର ମିଳିତ ତଥ୍ୟ ଉପରେ ପର୍ଯ୍ୟବସିତ ।

ପାଣ୍ଡୁଲିପିରୁ ଜଣାଯାଏ, ଓଡିଶାର ଜନସଂଖ୍ୟା ଥିଲା ୧,୩୩,୬୯,୮୧୭ ଯାହାର ଶତକଡା ୪୮.୭ ଭାଗ ପୁରୁଷ। ୧୯୪୧ରେ ଶତକଡା ୩.୮ ଭାଗ ଜନସଂଖ୍ୟା ସହରାଞ୍ଚଳରେ ରହୁଥିଲେ । ସ୍ତ୍ରୀ ପୁରୁଷ ଅନୁପାତ ଥିଲା ହଜାରେ ପୁରୁଷରେ ୧୦୫୪ ସ୍ତ୍ରୀ, ଜନସଂଖ୍ୟାର ଘନତ୍ୱ ଥିଲା ବର୍ଗମାଇଲ୍ ପିଛା ୨୩୩ ଏବଂ ଘରପିଛା ଜନସଂଖ୍ୟା ୪.୮। ୧୯୩୧-୪୧ ଦଶନ୍ଧିର ଜନବୃଦ୍ଧି ହାର ଥିଲା ଶତକଡା ୧୦.୨ଭାଗ । ଜନସଂଖ୍ୟାର ଶତକଡା ୧୯.୫ ଭାଗ ଜନଜାତି ଏବଂ ୧୪.୨ ଭାଗ ତଫସିଲଭୁକ୍ତ ଜାତି । ଶତକଡା ୧.୭୪ ଜନସଂଖ୍ୟା ମୁସଲମାନ ଏବଂ ୦.୨୭ ଭାଗ ଭାରତୀୟ ଖ୍ରୀଷ୍ଟିଆନ୍ ଥିଲେ ବୋଲି ଜଣାପଡେ । ଜନଜାତିଙ୍କ ମଧ୍ୟରେ କନ୍ଧ, ସାନ୍ତାଳ, ସଉରା, ଗଣ୍ଡ, ପରଜା, କୋଲ୍ହ, ଓମ୍ବ ଏବଂ କିସାନ୍ ଅଧିକ ମାତ୍ରାର ରହିଥିଲେ । ସାକ୍ଷରତା ହାର ଶତକଡା ୮.୫ ଏବଂ ଏହା ପୁରୁଷଙ୍କ କ୍ଷେତ୍ରରେ ୧୫.୩ ଥିଲାବେଳେ ସ୍ତ୍ରୀଙ୍କ ପାଇଁ

୨.୩ ଥିଲା । ଇଂରାଜୀରେ ସାକ୍ଷରତା ହାର ଥିଲା ଶତକଡା ୦.୬ ଭାଗ ଶତକଡା ୪୨.୦ ଭାଗ ଅବିବାହିତ ରହିଥିଲେ ଏବଂ ଏହାର ପୁରୁଷଙ୍କ ପାଇଁ ୪୯.୮ ଥିଲା ବେଳେ ସ୍ତ୍ରୀ ମାନଙ୍କ ପାଇଁ ୩୪.୮ ଶତକଡ଼ା ରହିଥିଲା । ବୈଧବ୍ୟର ହାର ପୁରୁଷଙ୍କ କ୍ଷେତ୍ରରେ ଶତକଡା ୩.୭ ଭାଗ ଥିଲା ବେଳେ ସ୍ତ୍ରୀଙ୍କ ପାଇଁ ଏହା ଥିଲା ଶତକଡା ୧୭.୩ ଭାଗ ।

ଉପର ଲିଖିତ ତଥ୍ୟ ନିଶ୍ଚିତ ଭାବେ ତତ୍‌କାଳୀନ ଓଡିଶାର ଜନସଂଖ୍ୟା ସଂବଧରେ ସମ୍ୟକ୍ ଧାରଣା ଦେବ ଯଦିଓ ସୀମିତ ଭାବରେ ଏହି ତଥ୍ୟଗୁଡିକୁ ଇତିହାସର ପରିପ୍ରେକ୍ଷୀରେ ଗ୍ରହଣ କରିବା ବିଧେୟ । ଏହା ପରବର୍ତ୍ତୀ ସମୟରେ ଜନସାଂଖ୍ୟିକ ଚରିତ୍ରକୁ ଓଡଶା କ୍ଷେତ୍ରରେ ବୁଝିବାକୁ ସାହାଯ୍ୟ କରିବ ବୋଲି ଆଶା ।

ଏହି ପ୍ରତିବେଦନରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପୂର୍ବ ଏବଂ ପର ସମୟର ଜନସାଂଖ୍ୟିକ ଚରିତ୍ରର ଝଲକ ଦିଆଯାଇଛି । ଉପରସଂହାରରେ କୁହାଯାଇପାରେ, ଜନଗଣନା ରିପୋର୍ଟଗୁଡିକ ଓଡିଶାର ଭାଷାଗତ ଏବଂ ସାଂସ୍କୃତିକ ବୈଶିଷ୍ଟ୍ୟ ପ୍ରତିପାଦନରେ ଚେଷ୍ଟିତ ରହିଥିଲା ଏବଂ ପରିଶେଷରେ ଏହା ପ୍ରତି ଦୃଷ୍ଟି ଆକର୍ଷଣ କରିବାରେ ସଫଳ ହୋଇଥିଲା । ୧୯୩୧ ଏବଂ ୧୯୪୧ ମସିହାର ଜନଗଣନାରୁ ମିଳିଥିବା ତଥ୍ୟର ପରିବେଷଣ ଦ୍ୱାରା । ଓଡିଶା ଜନସଂଖ୍ୟାର ବିଶେଷତ୍ୱକୁ ବୁଝିବାରେ ସାହାଯ୍ୟ କରିବ, ପରବର୍ତ୍ତୀ ସମୟରେ ଓଡିଶାର ଜନସଂଖ୍ୟାର ସ୍ୱାତନ୍ତ୍ର୍ୟକୁ ବୁଝିବା ପାଇଁ । ଯଥାର୍ଥରେ କୁହାଯାଇପାରେ ଓଡିଶା, ଉତ୍ତର କିମ୍ବା ଦକ୍ଷିଣ କୌଣସି ରାଜ୍ୟ ପରି ଜନସଂଖ୍ୟା ବା ସାଂସ୍କୃତିକ ଦୃଷ୍ଟିରୁ ସମାନ ନୁହେଁ ଉଭୟ ତାତ୍ତ୍ୱିକ ଦୃଷ୍ଟିରୁ ଓଡିଶା ସ୍ଥାନ ସ୍ୱତନ୍ତ୍ର ଏବଂ ଏହାର ବିଶେଷତ୍ୱ ଏବଂ ବିବିଧତାର ପ୍ରତିପାଦନ କରେ ।



ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କୁ ଜନଗଣନା ନିର୍ଦ୍ଦେଶକ ଶ୍ରୀ ବିଷ୍ଣୁପଦ ସେଠୀ ଏକ ଚିତ୍ରପଟ ପ୍ରଦାନ କରୁଛନ୍ତି ।

# ଜନସଂଖ୍ୟା ସମସ୍ୟା

(Census of India 1931 ଉପରେ ପର୍ଯ୍ୟବସିତ ଜନଗଣନା କମିଶନର J.H. Hutton ଙ୍କ ଦ୍ୱାରା ପ୍ରସ୍ତୁତ ରିପୋର୍ଟରୁ ଉଦ୍ଧୃତ) ଜନସଂଖ୍ୟାର ଭୟଙ୍କର ବୃଦ୍ଧି ସଂପର୍କରେ ଦୃଷ୍ଟି ଆକର୍ଷଣ କରାଯାଇଛି। ବୃଦ୍ଧିର ପ୍ରକୃତ ସଂଖ୍ୟା ଚଉତ୍ରିଶ ମିଲିଅନ୍, ଯାହାକି ଫ୍ରାନ୍ସ ବା ଇଟାଲୀର ମୋଟ ଜନସଂଖ୍ୟା ସହିତ ପାଖାପାଖି ସମାନ ଏବଂ ବିଶିଷ୍ଟ ୟୁରୋପୀୟ ଶକ୍ତି ଯଥା- ପୋଲାଣ୍ଡ ଓ ସ୍ପେନଠାରୁ ଆକର୍ଷଣୀୟ ଭାବେ ଅଧିକ।

ଭାରତର ବର୍ତ୍ତମାନର ଜନସଂଖ୍ୟା ଚୀନର ଆକଳନ କରାଯାଇଥିବା ଜନସଂଖ୍ୟାଠାରୁ ଅଧିକ। ତେଣୁ ଜନସଂଖ୍ୟା ଦୃଷ୍ଟିରୁ ଭାରତର ସ୍ଥାନ ପୃଥିବୀରେ ପ୍ରଥମ। ତେଣୁ ଏହି ବୃଦ୍ଧି ସନ୍ତୋଷ ପାଇଁ ନୁହେଁ ଏହା ଏକ ସତର୍କ ଘଣ୍ଟି। ୧୯୨୧ରେ ଭାରତରେ ମୋଟ ସାକ୍ଷର ସଂଖ୍ୟା ଥିଲା ୨୨,୬୨୩,୬୫୧ ଏବଂ ଏହା ବର୍ତ୍ତମାନ ୨୮,୧୩୧,୩୧୫। ତେଣୁ କେବଳ ଜନସଂଖ୍ୟାର ବୃଦ୍ଧି ଏହି ଦଶବର୍ଷ ଭିତରେ ୧୧ ମିଲିଅନ୍ ବା ଶତକଡ଼ା ୫୦ ଭାଗ ହୋଇଥିଲା ବେଳେ ସାକ୍ଷରତା ୨୪.୬ ଶତକଡ଼ା ୧୯୨୧ରେ ଥିବାବେଳେ ଏବେ ୨୩.୯ ଶତକଡ଼ାକୁ କମିଛି ଯଦିଓ ୧୯୩୧ରେ ଭାରତରେ ସାକ୍ଷରତା ହାର ଶତକଡ଼ା ୭ ଭାଗରୁ ବଢ଼ି ଆଠ ଭାଗ ହୋଇଛି।

ଏବେ ଜନସଂଖ୍ୟା ଉପରେ ଲେଖୁଥିବା କିଛି ଲେଖକ ଯଥା- Wattal ଏବଂ Ranadive ତାଙ୍କର ଦୃଷ୍ଟି ପ୍ରାଥମିକ ଭାବରେ ଖାଦ୍ୟ ଉତ୍ପାଦନ ଦିଗରେ ନିବିଷ୍ଟ କରିଛନ୍ତି। ତାଙ୍କର ଯୁକ୍ତି ହେଲା, ଭାରତର ଜନସଂଖ୍ୟା ବର୍ତ୍ତମାନ ବି ଖାଦ୍ୟ ଅଭାବ ଦିଗରେ ମୁହାଁଇଛି ସ୍ଥାୟୀ ଭାବରେ। ଜନସଂଖ୍ୟାରେ ଯେକୌଣସି ବୃଦ୍ଧି ଖାଦ୍ୟ ଯୋଗାଣ କ୍ଷେତ୍ରରେ ଅସନ୍ତୁଳନ ସୃଷ୍ଟି କରିବ। ତେବେ, ନିକଟରେ ପୂର୍ବ ଅନୁଭୂତି ଏହି ଯୋଗାଣ ବିଷୟରେ ନିର୍ଦ୍ଦିଷ୍ଟ ବିଷୟରେ ସଂଶୟ ଉତ୍ପନ୍ନ କରେ। ଖାଦ୍ୟର ଦାମ୍ କମିଯିବା ଏବଂ ଚାଷୀମାନେ ନିଜ ଉତ୍ପାଦିତ ଶସ୍ୟକୁ ବିକିବାରେ ଅସୁବିଧା ଭୋଗ କରିବାରୁ ଜଣାପଡ଼େ ଯେ ଖାଦ୍ୟର ଯୋଗାଣରେ କମ୍ ହେବାର ବିପଦ, ଏଇଠି ମୂଳ ପ୍ରଶ୍ନ ନୁହେଁ। ତେବେ ଏଠି ଯୁକ୍ତି ନୁହେଁ ଯେ, ଏହା ଏକ ଆଖିଦୃଶିଆ ବିପଦ ନୁହେଁ। ଯାହାହେଉ, ସବୁଠୁ ବେଶୀ ଜନସଂଖ୍ୟା ଯାହା ହୋଇପାରିବ, ତାହା ଯାହା ହେବା ଉଚିତ୍ ପର୍ଯ୍ୟନ୍ତ ପହଞ୍ଚି ପାରିନାହିଁ। କାରଣ ଜନସଂଖ୍ୟା ବୃଦ୍ଧି ବଞ୍ଚିବା ପାଇଁ ସର୍ବନିମ୍ନ ଆବଶ୍ୟକତା ଉପରେ ପ୍ରଭାବ ଆଣି ଜୀବନ ଧାରଣରମାନଙ୍କୁ କମାଇଦିଏ ଏବଂ ବର୍ତ୍ତମାନ ବି ଦେଶର ନିଜ ଲୋକଙ୍କ ଖାଇବାକୁ ଦେଇ ନ ପାରିବା ଭଳି ପରିସ୍ଥିତି ଏ ଦେଶ ପାଇଁ ଆସି ନାହିଁ। ପାଶ୍ଚାତ୍ୟ ଦେଶମାନଙ୍କ ବିଷୟରେ ଅର୍ଥନୀତିଜ୍ଞମାନଙ୍କ ସ୍ଥିତି ଏବେବି ଏହା ଯେ "ଶିଶୁମାନଙ୍କ ପ୍ରଳୟଙ୍କରୀ ସ୍ରୋତ" ଏକ ନୂତନ ବିନ୍ଦୁରେ ପରିଣତ ହୋଇସାରିଛି ଏବଂ ଯଦିବା ଏହା ପୁଣି ଫୁଲି ଉଠେ, ପ୍ରଗତିର ଦ୍ରୁତ ଅଭିବୃଦ୍ଧି, ଯାନ୍ତ୍ରିକ ତଥା ଜୈବିକ କ୍ଷେତ୍ରରେ, ଯେଉଁଭଳି ଭାବେ ଘଟି ଚାଲିଛି ପୃଥିବୀର ଖାଦ୍ୟ ଉତ୍ପାଦନ କ୍ଷେତ୍ରରେ, ତାହା ଯଥେଷ୍ଟରୁ ଅଧିକ ହୋଇ ଏହି ଜନବୃଦ୍ଧି ବନ୍ୟାକୁ ସମ୍ଭାଳିବାରେ ସକ୍ଷମ ହେବ। ଏହାଦ୍ୱାରା ବଞ୍ଚିବା ପାଇଁ ସର୍ବନିମ୍ନ ଆବଶ୍ୟକତା ଯୋଗାଇବାରେ ଧୀରେ ଧୀରେ ସହଜ ହେବ। ଏବେବି ସନ୍ଦେହ ଘେରରେ ରହିଛି ଯେ, ଉପରଲିଖିତ କୌଣସି ପ୍ରସ୍ତାବ ଭାରତ କ୍ଷେତ୍ରରେ ପ୍ରଯୁଜ୍ୟ ହେବ ନା ନାହିଁ।

ପ୍ରଥମତଃ, ବର୍ତ୍ତମାନ ପର୍ଯ୍ୟନ୍ତ ଦେଶରେ ଅନେକ ପୁତ୍ର ହେବାଠୁ କମ୍ ପୁତ୍ର ହେଲେ ଆଶୀର୍ବାଦ ଭାବିଲା ଭଳି ମନୋଭାବ ଆସି ନାହିଁ ଏବଂ ଏହା ଦ୍ୱାରା ବିପଦ ଯେ ସମ୍ମୁଖକୁ ଆସିଯାଇଛି, ସେ ସଂପର୍କରେ ଆଗରୁ ନ ଭାବିବାରୁ ଲଜ୍ଜିତ ହେବା ଭଳି ଚିନ୍ତାଧାରାରେ ପରିବର୍ତ୍ତନ ଆସି ନାହିଁ। ଦ୍ୱିତୀୟତଃ, କୃଷି ପରବର୍ତ୍ତୀ ଦଶନ୍ଧି ସୁଦ୍ଧା ଯେ ଆମେରିକାରେ ଗହମ ଉତ୍ପାଦନ କ୍ଷେତ୍ରରେ ହେଲାଭଳି ସ୍ଥିତିକୁ ଯାଇପାରିବ, ସେଭଳି କିଛି ସଂକେତ ନାହିଁ। ଆକଳନ କରାଯାଇଛି, ୟୁରୋପ ମହାଦେଶରେ କୃଷିକୁ ଜୀବିକା ଭାବେ ସମର୍ଥିତ ଜନସଂଖ୍ୟା ସବୁଠୁ ବେଶୀ ହେଲେ ହେବ

ବର୍ଗମାଇଲ ପିଛା ୨୫୦ । ଏକ ଆକଳନ ଅନୁଯାୟୀ ଯୁକ୍ତରାଷ୍ଟ୍ର ଆମେରିକା ଏବଂ ୱେଷ୍ଟଇଣ୍ଡିଜର ପୋର୍ଟୋରିକୋ ଦ୍ୱୀପରେ, କୃଷି ଉପରେ ନିର୍ଭରଶୀଳ ଜନସଂଖ୍ୟା ବର୍ଗମାଇଲ ପିଛା ୪୦୦ ବୋଲି ଦେଖାଯାଇଛି। ଆମେ ଦେଖିବା ଅନୁସାରେ ଭାରତର ଅନେକ ଅଂଶରେ ଏହି ସଂଖ୍ୟା ଯଥେଷ୍ଟ ଅଧିକ। ବଂଗଳାର କିଛି ଅଂଶର ଏବଂ ମାଲାବାର ଉପକୂଳର କିଛି ଗ୍ରାମାଞ୍ଚଳରେ ଏଭଳି ଅସାଧାରଣ ଘନତ୍ୱ ସୂଚାଇ ଦିଏ ଯେ, ଅଧିକ ଉତ୍ପାଦିକା ଶକ୍ତି ଥିବା ଜମିକୁ ଏହି ଅଞ୍ଚଳରେ ସଘନ ଚାଷ ପ୍ରକ୍ରିୟା ଦ୍ୱାରା ଚାଷ କରି ଏବଂ ତା' ସଂଗକୁ ମାଛଚାଷ କଲେ ମଧ୍ୟ ସେ ଅଞ୍ଚଳର ଜନସଂଖ୍ୟାର 'ଟ୍ରପିକାଲ କ୍ଲାଇମେଟ୍'ରେ ଲୋକଙ୍କ ପାଇଁ ସର୍ବନିମ୍ନ ଆବଶ୍ୟକତାକୁ ପୂରଣ କରିହେବ ନାହିଁ। ତେବେ ଭାରତରେ ଉତ୍ପାଦିକା ଶକ୍ତି ବେଶି ଥିବା ଅଞ୍ଚଳ ମଧ୍ୟରୁ ଏହି ଅଞ୍ଚଳ ଅତି ନିଆରା। ସାଧାରଣ ଭାବରେ କହିବାକୁ ଗଲେ ଭାରତରେ କୃଷି ନିର୍ଭରଶୀଳ ଜନସଂଖ୍ୟାର ଘନତ୍ୱ ଇଉରୋପୀୟ ଦେଶମାନଙ୍କ ତୁଳନାରେ ଯଥେଷ୍ଟ ବେଶୀ । ଏହା କେବଳ ଯେ ଇଉରୋପ ଅଞ୍ଚଳର ଜମିର ଉତ୍ପାଦିକା ଶକ୍ତି ବେଶୀ ଥିବାରୁ ନୁହେଁ, ଜୀବନର ଆବଶ୍ୟକତା ଯେହେତୁ ସେଠି କମିଯାଇଛି, ଜଳବାୟୁର ଆକ୍ରୋଶ କମ୍ ହୋଇଥିବାରୁ। ପ୍ରକୃତ ଅସୁବିଧା ହେଉଛି, ଅର୍ଥକରୀ ଦୃଷ୍ଟିରୁ କିଛି ଚାଷ କରିବାକୁ ହେଲେ, ଏକ ନିର୍ଦ୍ଧାରିତ ଅଞ୍ଚଳରେ କାମ କରି ପାରିବା ମୋଟ ବ୍ୟକ୍ତି ସଂଖ୍ୟା ସୀମିତ। ଖାଦ୍ୟ ଉତ୍ପାଦନ ସେହି ସଂଖ୍ୟାରୁ ବେଶୀ ଲୋକଙ୍କ ପାଇଁ ଯଥେଷ୍ଟ ହୋଇଥିଲେ ମଧ୍ୟ, ଜନସଂଖ୍ୟାର ବହୁ ପରିମାଣରେ ବୃଦ୍ଧି, କୃଷି ଉପଯୁକ୍ତ ଅଞ୍ଚଳଗୁଡ଼ିକୁ ଅଧିକ ଭାଗ ଭାଗ କରିବ ଏବଂ ତଦ୍ୱାରା ଜମିର କ୍ଷୁଦ୍ରତା ଦ୍ୱାରା ଅର୍ଥନୈତିକ ସମସ୍ୟା ସୃଷ୍ଟି ହୋଇ ଉତ୍ପାଦନ କମିଯିବ। ଅନ୍ୟଥା ଏକ ଭାସମାନ ଜନସଂଖ୍ୟାର ସୃଷ୍ଟି ହେବ ଯେ କି କୃଷିକର୍ମରେ ନିୟୋଜିତ ନ ଥିବେ ଏବଂ ନିଜେ ଆବଶ୍ୟକ କରୁଥିବା ଖାଦ୍ୟ ବଦଳରେ କିଛି ଦେଇପାରିବେ ନାହିଁ। କାର୍ଯ୍ୟ ଆବଶ୍ୟକ କରୁଥିବା ଏହି ବଳକା ଲୋକଙ୍କୁ ଶିଳ୍ପ କ୍ଷେତ୍ରରେ ନିଯୁକ୍ତି ଦେଇ ଏହି ଅସୁବିଧାକୁ କିଛି ସମୟ ପାଇଁ ଦୂର କରି ହେବ। କିନ୍ତୁ ସ୍ଥାୟୀ ଦୂରୀକରଣ ପାଇଁ ଜନସଂଖ୍ୟା ବୃଦ୍ଧିକୁ ସୀମିତ କରିବା ଦ୍ୱାରା ହିଁ ସମ୍ଭବ, ଯାହା କୃଷିଭିତ୍ତିକ ତଥା ଶିଳ୍ପରେ ନିୟୋଜିତ ଜନସଂଖ୍ୟା ମଧ୍ୟ ନିୟନ୍ତ୍ରଣ କରିବ।

ଆଗରୁ କୁହାଯାଇଥିବା ଦ୍ୱିତୀୟ ପ୍ରସ୍ତାବକୁ ଗ୍ରହଣ କଲେ, ୟୁ.କେ. ଦେଶ କ୍ଷେତ୍ରରେ ହେଲାଭଳି, ଯେଉଁଠି କି ଆଗ ଦଶନ୍ଧିର ଜନସଂଖ୍ୟା ବୃଦ୍ଧି ୧୯୩୧ରେ ନିଯୁକ୍ତ ନଥିବା ଲୋକଙ୍କ ସଂଖ୍ୟା ସହ ସମାନ ଥିଲା। ଅଣନିଯୁକ୍ତ ସଂଖ୍ୟା ବଢ଼ିବ ଏବଂ ଖାଦ୍ୟ ଯୋଗାଣ ଯେ ଏହି କ୍ଷେତ୍ରରେ ଯଥେଷ୍ଟ, ଏଭଳି ଚିନ୍ତା ଅଯୌକ୍ତିକ ହୋଇପାରେ। ଇଉରୋପରେ କେତେକ ଅଞ୍ଚଳରେ ହେଲାଭଳି, ଭୂମିଗତ ଜୀବନ ଚାଷୀ ଭାବରେ ସର୍ବସ୍ୱ ଏବଂ ଏହା କେବେ କେବଳ ଉତ୍ପାଦନର ମାଧ୍ୟମ ନୁହେଁ। ତେଣୁ ଜନସଂଖ୍ୟା ବୃଦ୍ଧିର ପ୍ରକୃତ ବିପଦ ହେଲା, ଏହା ଅଧିକ ଚିନ୍ତାଗ୍ରସ୍ତ ପରିସ୍ଥିତିରେ ପକାଇବ କାରଣ ଏହି କୃଷି ସର୍ବସ୍ୱ ଜୀବନ ପଦ୍ଧତିକୁ ଗ୍ରହଣ କରିବା ଧୀରେ ଧୀରେ ଅଧିକ ଅସୁବିଧା ହେବ। ଭାରତର ବର୍ତ୍ତମାନ ସମସ୍ୟା ବୋଧହୁଏ, ମୋଟ ଜନସଂଖ୍ୟା ବୃଦ୍ଧି କ୍ଷେତ୍ରରେ କମ୍ ଏବଂ କୃଷି ଏବଂ ଆନୁଷଂଗିକ, କ୍ଷେତ୍ର ଉପରେ ନିର୍ଭର କରୁଥିବା ଜନସଂଖ୍ୟା ବୃଦ୍ଧି କ୍ଷେତ୍ରରେ ବେଶୀ। ଅର୍ଥାତ୍ ଜନସଂଖ୍ୟାର କୃଷିଭିତ୍ତିକ ଜନସଂଖ୍ୟା ଅଂଶର ଅଧିକ ଅଭିବୃଦ୍ଧି ହିଁ ସମସ୍ୟା। ଆଉ ଏକ ଅଧିକ ବିଷମ ଅବସ୍ଥା ହେଲା କୃଷି ଉପରେ ନିର୍ଭରଶୀଳ ଜନସଂଖ୍ୟା ପାଖରେ କୃଷି କାର୍ଯ୍ୟକୁ ଅଧିକ ବ୍ୟାପକ କରିବାକୁ ସାଧନ ନ ଥିବା, ବିଶେଷ କରି ବୃଷ୍ଟିପାତ ଉପରେ ନିର୍ଭରଶୀଳ ଚାଷ କ୍ଷେତ୍ରରେ ରହିଥିବା ସମସ୍ୟା ଦୂରୀକରଣ ପାଇଁ। ଯାନ୍ତ୍ରିକ ଉନ୍ନତି, ଯଦ୍ଦ୍ୱାରା ଶ୍ରମିକ ଉପରେ ନିର୍ଭରଶୀଳତାକୁ କମାଇପାରିବ ଏକ ଗ୍ରହଣଯୋଗ୍ୟ ପଦକ୍ଷେପ ହେବା ସନ୍ଦେହମୂଳକ ରହିଛି। ଏ ସମୟରେ ଏହା ମନେ ହୋଇପାରେ ଯେ, ବର୍ତ୍ତମାନ ହାରବୃଦ୍ଧିକୁ ଦୃଷ୍ଟିରେ ରଖି, ଶିଶୁ ମୃତ୍ୟୁକୁ କମ୍ କରିବାକୁ ପଦକ୍ଷେପ, ଜନ୍ମହାର ରୋକିବାକୁ ପଦକ୍ଷେପ ଅଧିକ ଗୁରୁତ୍ୱପୂର୍ଣ୍ଣ। ଯଦି 'ଶିଶୁ ସପ୍ତାହ' ପାଳନର ଶ୍ରେୟସ୍କରତାକୁ ଗ୍ରହଣ କରାଯାଏ, ତେବେ ମଧ୍ୟ ଜନ୍ମ ନିୟନ୍ତ୍ରଣ ସମ୍ବନ୍ଧୀୟ ଉପଦେଶ ସହ ଏହା କରାଯାଇପାରେ। ଏହି ଦିଗରେ କିଛି ନୂତନ ପଦକ୍ଷେପ ମହୀଶୂର ସରକାରଙ୍କ ଦ୍ୱାରା ନିଆଯାଇଛି, ୧୯୩୦ ମସିହାରେ ରାଜ୍ୟର ଚାରୋଟି ହାସ୍ପାତାଲରେ ଜନ୍ମ ନିୟନ୍ତ୍ରଣ କ୍ଲିନିକ କରିବାର ଆଦେଶ ଦ୍ୱାରା।

ଅତ୍ୟଧିକ ଜନସଂଖ୍ୟା ବୃଦ୍ଧିକୁ ରୋକିବାକୁ ବୋଧହୁଏ ଅନ୍ୟ ପ୍ରଣାଳୀଗୁଡ଼ିକ ରହିଛି। ଇଉରୋପ ମହାଦେଶରେ ସ୍ୱଚ୍ଛ ଭାବରେ ପରିଦୃଷ୍ଟ ହୋଇଛି ଯେ ଜୀବନ ଧାରଣ ମାନର ଉନ୍ନତି ସାଧାରଣତଃ ଜନ୍ମହାର କମ୍ କରିବା ସହିତ ସହଗାମୀ ଏବଂ ଏହି ପ୍ରକରଣ ଭାରତରେ ମଧ୍ୟ ନିସନ୍ଦେହ ଭାବେ କାର୍ଯ୍ୟକରୁଛି। ତେବେ ବେକନ୍‌ଙ୍କ ଉକ୍ତି ଯଥା କମିଯିବା ସୃଷ୍ଟି ହେବାର ଏକ ଶତ୍ରୁ ଭଳି ସତ୍ୟ ସହିତ ଆମେ ସହମତ ହେଲେ ମଧ୍ୟ, ଏହା କୁହାଯାଇପାରେ ଯେ ଖାଦ୍ୟର ବଳକା ହେବା ଯଥେଷ୍ଟ ନୁହେଁ କାରଣ ଏହା ଯାହା ପାଖରେ ଥାଏ ତାକୁ ଅଧିକ ଶିଶୁ ଉତ୍ପାଦନ ପାଇଁ ପ୍ରୋତ୍ସାହନ ଦିଏ ଏବଂ ଆଉଥରେ କେବଳ ବଞ୍ଚିବା ଭଳି

ସ୍ତରକୁ ନେଇଆସେ। ଜୀବନ ଧାରଣର ମାନ ଅଧିକ ହେବାଦ୍ୱାରା ପ୍ରଜନନ ହାର ଉପରେ ପ୍ରଭାବ ପକାଇବାକୁ ହେଲେ, ଶିକ୍ଷା ଏବଂ ସଂସ୍କୃତିର ଅଭିବୃଦ୍ଧି ଯେ କେବଳ ଆବଶ୍ୟକ ତା ନୁହେଁ, ଅଧିକ ଦିନ ବଞ୍ଚିବା ସମ୍ଭବ ହେବାର ଆଶା ମଧ୍ୟ ଆବଶ୍ୟକ। ଏଠି କୁହାଯାଇପାରେ ଯେ ଶିକ୍ଷା ଏବଂ ସଂସ୍କୃତି ବୌଦ୍ଧିକ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇ ଏବେ ତାକୁ ପ୍ରଭାବିତ କରି ଜୀବନକୁ ରୋକିବା ଦିଗରେ ସାହାଯ୍ୟ କରେ। ରିଭରସ୍, ପିଟ୍-ରିଭରସ୍, ରବର୍ଟ ଏବଂ ଅନ୍ୟାନ୍ୟଙ୍କ ଦ୍ୱାରା ପାସିଫିକ୍ ଅଞ୍ଚଳରେ କରାଯାଇଥିବା ଜନସଂଖ୍ୟା ଉପରେ ଗବେଷଣାରୁ ସ୍ୱଚ୍ଛ ଭାବେ ଜଣାପଡ଼େ ଯେ, ମାନସିକ କାରଣଗୁଡ଼ିକ ଜନସଂଖ୍ୟାର ବୃଦ୍ଧି ବା କମ୍ ହେବାକୁ ପ୍ରଭାବିତ କରେ। ଯଦିଓ ଭାରତରେ ପରିସ୍ଥିତି ସଂପୂର୍ଣ୍ଣ ଭିନ୍ନ, ଏହା କୌଣସି କାରଣ ନୁହେଁ, ଯଦ୍ୱାରା କି ମାନସିକ କାରଣଗୁଡ଼ିକର ପ୍ରଜନନ ଉପରେ ପ୍ରଭାବକୁ ଏଠି ଏଡ଼ାଇ ଦିଆଯାଇପାରେ। ଏହା ବି ସମ୍ଭବ ଯେ, ପରିବର୍ତ୍ତିତ ଚିନ୍ତାଧାରା, ଯେଉଁଠି ପୃଥିବୀର ମଙ୍ଗଳ କାମନା ତେବେ ଜୈବିକ କ୍ଷେତ୍ରରେ ଉନ୍ନତି ଆଣି ଏକ କ୍ଷୁଦ୍ର କ୍ଷେତ୍ରରୁ ଅଧିକ ଭଲ ଭାବରେ ଉତ୍ପାଦନ ବୃଦ୍ଧି ପାଇଁ ପଦକ୍ଷେପ ସନ୍ଦେହଶଂକୁଳ ନୁହେଁ। ଶ୍ରମ କମ୍ କଲାଭଳି ପଦକ୍ଷେପ କିଛି ସମୟ କୃଷି ଉପରେ ନିର୍ଭର କରୁଥିବା କୃଷକଙ୍କ ପାଇଁ ଲାଭଦାୟକ ନୁହେଁ ଏବଂ ନିଶ୍ଚିତ ଭାବେ ସେଭଳି ପଦକ୍ଷେପ ଏକ କ୍ଷୁଦ୍ର ଅଞ୍ଚଳ, ଯାହା ଉପରେ ନିର୍ଭର କରି ଅଧିକ ଜନସଂଖ୍ୟାକୁ ସମ୍ଭାଳି ପାରିବ ନାହିଁ, କାରଣ ସେଠି ନା ଦରକାର ଅଛି ନା ବଜାର ଅଛି କୃଷି ଭିତ୍ତିକ କ୍ଷୁଦ୍ର ଉତ୍ପାଦନ ପାଇଁ। ଏହା କିନ୍ତୁ ଇଉରୋପର କ୍ଷୁଦ୍ରଚାଷୀ, କୁକୁଡ଼ା ଓ ଘୁଷୁରୀ ପାଳନ ଓ ଆଳୁଚାଷୀଙ୍କ ଆୟ କ୍ଷେତ୍ରରେ ସଂଭବ ହୋଇଛି।

ଜନସଂଖ୍ୟା ସମସ୍ୟା ସଂପର୍କରେ ଆଲୋଚନା କରୁଥିବା ଭାରତୀୟ ଅର୍ଥନୀତିଜ୍ଞମାନଙ୍କ ସାଧାରଣ ମତ ହେଲା, ଜନସଂଖ୍ୟାକୁ ସୀମିତ ରଖିବାପାଇଁ ଏକମାତ୍ର ପ୍ରକୃତ ପନ୍ଥାହେଲା, ଜନ୍ମ ନିୟନ୍ତ୍ରଣର କୃତ୍ରିମ ପ୍ରଣାଳୀକୁ ପ୍ରଚଳନ କରିବା। ତେବେ ଏକ ବିରାଟ ଦେଶ, ଯେଉଁଠି ଏକ ବିପୁଳ ଜନସଂଖ୍ୟା ପୁତ୍ର ଜନ୍ମ କରି ବଂଶବୃଦ୍ଧି କରିବାକୁ ଏକ ଧାର୍ମିକ କର୍ତ୍ତବ୍ୟ ବୋଲି ଭାବେ ଏବଂ ବନ୍ଧ୍ୟାତ୍ୱକୁ ପୂର୍ବଜନ୍ମ କରିଥିବା କୁକର୍ମର ଦଣ୍ଡଭାବେ ଗଣନାକରେ, ସେଭଳି ଦେଶରେ ଜନ୍ମ ନିୟନ୍ତ୍ରଣ ପ୍ରଚଳନ କରିବାର ଦୁରୁହତ୍ୱ ଆକଳନ କରିବା ସହଜନୁହେଁ। ମହୀଶୂର ରାଜ୍ୟର ଜନଗଣନା ସୁପରିନ୍‌ଟେଣ୍ଡେଣ୍ଟ ଠିକ୍ କହିଛନ୍ତି ଯେ, ବିବାହର ସାର୍ବଜନୀନତ୍ୱ ଏବଂ ବାଲ୍ୟ ବିବାହ ସାମାଜିକ ପ୍ରଥା ଏବଂ ଏହା କୌଣସି ଧାର୍ମିକ ଚିନ୍ତାଧାରାରୁ ନୁହେଁ। ତେବେ ପ୍ରାୟତଃ ସବୁବେଳେ ଧାର୍ମିକ ଯୁକ୍ତି ଯାହାକି ସାମାଜିକ ପ୍ରଥାରେ ପରିବର୍ତ୍ତନ ନ ଆଣିବା ପାଇଁ କରାଯାଏ, କୌଣସି ସମାଜରେ ବା କୌଣସି ସ୍ଥାନରେ, ତାହା ସାମାଜିକ ପ୍ରଥାର ପ୍ରତିଫଳନ ମାତ୍ର ତାହା ସାମାଜିକ ପ୍ରଥାର ଧାର୍ମିକ କାରଣ ନୁହେଁ। ତେବେ ଏହି ତଥ୍ୟ ଧାର୍ମିକ କାରଣଗୁଡ଼ିକୁ ଅଧିକ ବଳଶାଳୀ କରେ। ଯାହାହେଉ ଏକ ନିର୍ଦ୍ଦିଷ୍ଟ ଆନ୍ଦୋଳନ, ଜନ୍ମ ନିୟନ୍ତ୍ରଣ ସପକ୍ଷରେ ମୁଣ୍ଡ ଟେକୁଛି ଏବଂ ଏହା ଅନ୍ୟ କିଛି ଯେ ନିଜକୁ ଅଧିକ ଉନ୍ନତ ମନେକରନ୍ତି, ସେମାନଙ୍କ ଅସନ୍ତୁଳିତ ଜ୍ଞାନ ଦ୍ୱାରା ବାଧାପ୍ରାପ୍ତ ହେବା ସମ୍ଭାବନା ନାହିଁ। ତେଣୁ ଅନେକ ଡାକ୍ତରୀ ବିଦ୍ୟାର ଲେଖକ କୃତ୍ରିମ ନିୟନ୍ତ୍ରଣ ପଦ୍ଧତିର ସପକ୍ଷରେ କେବଳ ଜନସାଧାରଣରେ ପ୍ରଚାର କରୁନାହାନ୍ତି, ତେବେ ମାଡ୍ରାସ ଏକ ନିଓମାଲ୍‌ଥୁସିୟ ଲିଗ୍ ସଂପର୍କରେ ଗର୍ବ କରିପାରେ, ଯେଉଁଥିରେ ଦୁଇଟି ମହାରାଜା, ତିନୋଟି ହାଇକୋର୍ଟ ଜଜ୍ ଏବଂ ଚାରି ବା ପାଞ୍ଚୋଟି ଜନଜୀବନରେ ମୁଖ୍ୟ ଅଂଶ ଗ୍ରହଣ କରୁଥିବା ବ୍ୟକ୍ତିଙ୍କ ସୂତ୍ରଧର ଭାବେ ଅବଦାନକୁ ଅଧିକ ଗୁରୁତ୍ୱ ଦିଆଯାଏ ଏବଂ ଭବିଷ୍ୟତର ଆକଳନକୁ କମ୍ ଗୁରୁତ୍ୱ ଦିଆଯାଏ। ଉଭୟ ସମାନ ଦିଗରେ ପ୍ରଭାବିତ କରିବେ। ତେବେ ଏହା ସନ୍ଦେହ ଜନକ ମନେହୁଏ, ଭାରତୀୟ ସଂସ୍କୃତିକୁ ଭୌତିକ ଚିନ୍ତାଧାରା ପ୍ରଭାବିତ କରିପାରିବ।

(**ବି.ଦ୍ର. :** ଜେ.ଏଚ୍. ହଟନ୍ ପ୍ରଶାସନ ଅଧିକାରୀ ହେଲେ ମଧ୍ୟ ଜଣେ ତାଲିମପ୍ରାପ୍ତ ନୃତତ୍ତ୍ୱବିତ୍। ୧୯୩୧ର ଜନଗଣନା ରିପୋର୍ଟ ତାଙ୍କ ଦକ୍ଷତାର ପ୍ରତିଫଳନ। ଉପରୋକ୍ତ ବିଶ୍ଲେଷଣ ଜନସଂଖ୍ୟାବିତ୍‌ମାନଙ୍କ ଚିନ୍ତାଧାରାକୁ ଅଧିକ ଶାଣିତ କରିବ ଆଠ ଦଶନ୍ଧି ପୂର୍ବ ସ୍ଥିତିର ପରିପ୍ରେକ୍ଷୀରେ। ଜନସଂଖ୍ୟା ବୃଦ୍ଧି ସଂପର୍କରେ ସଚେତନତା ଯେ ସ୍ୱାଧୀନୋତ୍ତର ଚିନ୍ତା ନୁହେଁ, ଏହା ପ୍ରାକ୍‌ସ୍ୱାଧୀନତା ସମୟରୁ ବୃଦ୍ଧି ହୋଇଛି, ଉଦ୍ଧୃତ ଅନୁବାଦ ଏହା ପ୍ରତିପାଦିତ କରେ।)



# ଜନଗଣନାରୁ ଭାଷା - ଓଡ଼ିଶା ପରିପ୍ରେକ୍ଷୀରେ

**ଭା**ଷା ଭାବ ପ୍ରକାଶର ଏକ ମାଧ୍ୟମ । ଭାଷାର ଉଦ୍‌ଭବ ହୋଇଥିଲା କ୍ରମ ବିବର୍ତ୍ତନ ପଦ୍ଧତିରେ ବିଭିନ୍ନ ସ୍ତର ଦେଇ । ପୁଣି ସ୍ଥାନ ବିଶେଷରେ ଭାଷାର ପ୍ରକୃତିରେ ବିଭିନ୍ନତା ପରିଲକ୍ଷିତ ହୁଏ । ଭାରତରେ ବିଭିନ୍ନ ଭାଷାର ଉତ୍ପତ୍ତି, ଅଭିବୃଦ୍ଧି ଏବଂ ଲୋପ ପାଇଯାଇଥିବାର ଉଦାହରଣର ଅଭାବ ନାହିଁ । ତେବେ, ଏବେବି ଭାରତୀୟ ଅନେକ ଭାଷା ବ୍ୟବହାର କରନ୍ତି ଲେଖିବା ପାଇଁ ଏବଂ ତାଠୁ ଅଧିକ ଭାଷା କହିବା ପାଇଁ ବ୍ୟବହାର କରିଥାନ୍ତି । ଭାରତରେ ୨୮ଟି ରାଜ୍ୟ ଏବଂ ୭ଟି କେନ୍ଦ୍ର ଶାସିତ ଅଞ୍ଚଳ ରହିଛି । ମୂଳତଃ ଭାଷା ଭିତ୍ତିରେ ଗଠନ ହୋଇ । ଭାରତର ଅଧିକାଂଶରେ ଗ୍ରାମ ବହୁଳ ଯେଉଁଠି ସେଠାର ସ୍ଥାନୀୟ ଭାଷା ପ୍ରାୟ ପ୍ରଚଳିତ ହୁଏ ତାର ବିଶେଷ ପ୍ରକୃତିକୁ ନେଇ । ସେଭଳି ନଗରୀ ଏବଂ ମହାନଗରୀଗୁଡ଼ିକରେ ବହୁଭାଷାଭାଷୀ ଲୋକ ରହିଥାନ୍ତି ଏବଂ ସେସବୁ ସ୍ଥାନରେ ଏକ ବହୁଭାଷୀ ସଂସ୍କୃତିର ଉଦଭବ ଏବଂ ପୁଷ୍ଟି ହୋଇଥାଏ, ତେଣୁ ପ୍ରତ୍ୟେକ ଭୌଗଳିକ ପରିସୀମାର ଏକ ବହୁଭାଷୀ ଚରିତ୍ର ରହିଛି । ତେବେ ଭାରତର ବିଶେଷତ୍ୱ ହେଉଛି, ଏଠି ଭାବର ପରିପ୍ରକାଶରେ କୌଣସି ଅସୁବିଧା ହୁଏ ନାହିଁ । କାରଣ ଭାରତର ସଂସ୍କୃତିର ମୂଳମନ୍ତ୍ର ହେଲା ଧୈର୍ଯ୍ୟ ଓ ପରସ୍ପର ପ୍ରତି ସମ୍ମାନ ଓ ସହନଶୀଳତା । ତଥାପି କିଛିଟା ନିୟନ୍ତ୍ରଣ ପାଇଁ ଭାରତୀୟ ସମ୍ବିଧାନରେ ସରକାରୀ ସ୍ତରରେ ବ୍ୟବହାର ପାଇଁ ରାଜ୍ୟମାନଙ୍କ ନିଜ ଭାଷା ଚୟନ ପାଇଁ ବ୍ୟବସ୍ଥା ହୋଇଛି । କେଉଁ ଭାଷା ଗୁଡ଼ିକ ସରକାରୀ ଭାଷା ଭାବେ ଗ୍ରହଣ କରାଯିବ, ତାର ତାଲିକା ଅଷ୍ଟମ ପରିଚ୍ଛେଦରେ ଦିଆଯାଇଛି । ପ୍ରଥମରେ ଏଥିରେ ୧୪ଟି ଭାଷାଥିଲା ଏବଂ ୨୦୦୨ବେଳକୁ ଏହାର ସଂଖ୍ୟା ୨୨ଥିଲା । ଏହା ବ୍ୟତୀତ ଜନଗଣନାରେ ମାତୃଭାଷା ଏବଂ ଅନ୍ୟାନ୍ୟ ଭାଷାର ପ୍ରକାର ଭେଦ ହିସାବରେ ବିଭିନ୍ନ ଭାଷାକୁ ରେକର୍ଡଭୁକ୍ତ କରାଯାଏ, ଉତ୍ତରଦାତାଙ୍କ କହିବା ଅନୁସାରେ । ଭାଷାତତ୍ତ୍ୱବିଦ୍ ମାନଙ୍କ ପାଇଁ ଜନଗଣନା ସମୟରେ ଭାଷା ବିଷୟରେ ସଂଗୃହୀତ ତଥ୍ୟର ବହୁଳ ବ୍ୟବହାର ପାଇଁ ସୁଯୋଗ ରହିଛି । କାରଣ ଏହା ଏକ ମାତ୍ର ଆଧାର ସମୟାନୁକ୍ରମେ ଭାଷାର ଅଭିବୃଦ୍ଧି ତଥା ବିଭିନ୍ନ ଭାଷାର ଭୌଗଳିକ ଅବସ୍ଥିତି ଏବଂ ବିସ୍ତାର ବିଷୟରେ ଅନୁଶୀଳନ ପାଇଁ । ଏହି ତଥ୍ୟର ବହୁଳ ଉପଯୋଗ ରହିଛି, ସରକାରୀ ବା ବେସରକାରୀ ଯୋଜନା ଏବଂ କାର୍ଯ୍ୟାୟନର ଲୋକଦୃଷ୍ଟିକୁ ଆଣିବା ପାଇଁ ।

**ଭାଷା କାହିଁ କି ?**

ବିଭିନ୍ନ ଭାଷାର ଉଦ୍‌ଭବ, ଉତ୍‌ଥାନ ଏବଂ ପତନ ଏ ପ୍ରଶ୍ନର ଉତ୍ତର ଦେବାକୁ ସମର୍ଥ ହେବ । ତେବେ ଇତିହାସକୁ ଇତିହାସରେ ରଖି, ସାଂପ୍ରତିକ ପରିସ୍ଥିତିକୁ ଆଖି ଆଗରେ ରଖି କିଛି ପ୍ରତିବେଦନ ପ୍ରାସଂଗିକ ହେବ । ଦୈନନ୍ଦିନ ଜୀବନରେ ଭାଷାର ଗୁରୁତ୍ୱ ବୁଝାଇବାର ଆବଶ୍ୟକତା ନାହିଁ । ଏହି ବ୍ୟବହାର କ୍ଷେତ୍ରରେ ସ୍ଥାନୀୟ କଥିତ ଭାଷାର ଗୁରୁତ୍ୱ ଅଧିକ, ଯଦିଓ ବହୁଭାଷାରେ କହିବାପାଇଁ ଚଳନୀୟ ଦକ୍ଷତାର ଆବଶ୍ୟକତା ରହିଛି ଆଜିର ସମାଜରେ ଯେ କୌଣସି ଅଞ୍ଚଳ ପାଇଁ ପ୍ରାୟତଃ ।

ଭାଷାର ପରବର୍ତ୍ତୀ ଗୁରୁତ୍ୱ ଆସେ, ଆଧୁନିକ ସମାଜରେ ଲିଖିତ ଓ ପଠିତ ଭାଷା ଭାବରେ । ସମୟକ୍ରମେ ବିଭିନ୍ନ ଭାଷାରେ ବହୁ କାଳଜୟୀ ସାହିତ୍ୟ ତଥା ସାମୟିକ ଆମୋଦ ପାଇଁ ଅନେକ ଲିଖିତ ସୃଷ୍ଟି ରହିଛି ସାଧାରଣ ଜନତାଠାରୁ ଆରମ୍ଭକରି ବୁଦ୍ଧିଜୀବିମାନଙ୍କ ପାଇଁ । ଯେଉଁ ଯେଉଁ ଭାଷାର ନିଜସ୍ୱ ଲିପି ରହିଛି ବହୁକାଳରୁ ସେ ଭାଷାଗୁଡ଼ିକ ଏ ଦିଗରେ ବେଶୀ ସମୃଦ୍ଧି ଏବଂ ଲିଖିତ ସ୍ତରରେ ପହଞ୍ଚିଗଲେ, ଭାଷା ବଞ୍ଚିରହିବାପାଇଁ ଏକ ବିଶେଷ ସୁଯୋଗ ସୃଷ୍ଟି କରେ । ଲିପି ସ୍ୱତନ୍ତ୍ର ନ ହୋଇଥିଲେ ମଧ୍ୟ ଭାଷାଗୁଡ଼ିକର କିଛିଟା ପରିବର୍ତ୍ତିତ ରୂପ ଦେଖାଯାଏ ଅଞ୍ଚଳ ଭେଦରେ ଏବଂ ସାଧାରଣ ଜନତା ପାଇଁ ଏହା ସଂଯୋଗ ମାଧ୍ୟମ ଭାବେ ଉଭାହୁଏ । ଅନେକ ଜନଜାତିଙ୍କର ସ୍ୱତନ୍ତ୍ର ଭାଷା ଭାରତର ଭାଷାର ବିବିଧତାକୁ ପୁଷ୍ଟି କରେ । ଆଧୁନିକ ସମାଜରେ ଗଣମାଧ୍ୟମ ଏକ ସବଳ ଆଧାର ଭାଷାର ପ୍ରଗତି ଏବଂ ତିଷ୍ଠି

ରହିବାର ଶକ୍ତି ସଂଗ୍ରହ ପାଇଁ। ଭାରତର ରେଡିଓରେ ୨୪ଟି ଭାଷା ଏବଂ ୧୪୬ଟି ସହଯୋଗୀଭାଷା (ଡାଇଲେକ୍ଟ)ରେ କାର୍ଯ୍ୟକ୍ରମ ପ୍ରସ୍ତୁତ କରୁଛନ୍ତି । ସ୍କୁଲରେ ବ୍ୟବହାର ଭାଷାର ଏବେ ବ୍ୟାପକ କ୍ଷେତ୍ରରେ । ଜାତୀୟ ଶିକ୍ଷାନୀତି ୧୯୮୬ରେ କାର୍ଯ୍ୟାନ୍ୱୟନ ପାଇଁ ଲିଖିତ ନିର୍ଦ୍ଦେଶାବଳୀ ୧୯୯୨ରେ କିଛି ଭାଷାକୁ ଆଧୁନିକ ଭାରତୀୟ ଭାଷା ଭାବେ ବର୍ଣ୍ଣନା କରି ସେଇ ଭାଷାଗୁଡ଼ିକରେ ଶିକ୍ଷାଦାନ ପାଇଁ ଗ୍ରହଣ କରିଛନ୍ତି । ଏହି ଭାଷାଗୁଡ଼ିକ ଅଧିକ ଜଣାଶୁଣା ତଫସିଲଭୁକ୍ତ ଭାଷା ଭାବରେ ଆଗରୁ ଏହା ଭାଷାର ବ୍ୟବହାର ସଂପର୍କରେ ଅଳ୍ପ କିଛି ପରିବେଷଣ । ଅଧିକ ପ୍ରକାର ବ୍ୟବହାର କଳ୍ପନା କରାଯାଇପାରେ । ତେବେ ଭାରତରକୁ ଭାଷାଭିତ୍ତିକ ବିବିଧତା ଅଧ୍ୟୟନ ପାଇଁ କିଛିଟା ଦିଗ୍‌ଦର୍ଶନ ଭାବରେ ଏହି ପରିବେଷଣକୁ ଗ୍ରହଣ କରାଯାଇପାରେ ଅଧିକ ଅନୁସନ୍ଧାନ ପାଇଁ ।

## ଜନଗଣନାରେ ଭାଷା

ଜନଗଣନାରେ ଭାଷା ସଂପର୍କରେ ପ୍ରଶ୍ନ ବ୍ରିଟିଶ ସମୟ (୧୮୮୧)ରୁ ଚାଲି ଆସିଛି । ୧୯୨୧ ଜନଗଣନା ରିପୋର୍ଟରେ ଭାଷା ସଂଖ୍ୟା ଥିଲା ୧୮୮ ଏବଂ ଡାଇଲେକ୍ଟ (କଥିତ ଭାଷା) ୪୯ଟି ଥିଲା । ପରବର୍ତ୍ତୀ କାଳରେ ମାତୃଭାଷା ସଂପର୍କୀୟ ପ୍ରଶ୍ନ ଜନଗଣନାରେ ଅନ୍ତର୍ଭୁକ୍ତ ହେଲା ଯଦିଓ ଭିନ୍ନ ଭିନ୍ନ ଜନଗଣନାରେ ଜନଗଣନାକାରୀଙ୍କୁ ଏହାକୁ ଭିନ୍ନ ଭିନ୍ନ ଭାବେ ପଚରା ଯିବାକୁ କୁହାଗଲା । ୧୮୮୧, ୧୯୩୧, ୧୯୪୧ ଏବଂ ୧୯୫୧ରେ ପ୍ରଶ୍ନଥିଲା 'ମାତୃଭାଷା' । ମାତୃଭାଷାର ସଂଜ୍ଞାଥିଲା ଜଣେ ବ୍ୟକ୍ତି ଶୈଶବରେ କହିଥିବା ପ୍ରଥମଭାଷା। ୧୮୯୧ମସିହାରେ ଏହାର ସଂଜ୍ଞାଥିଲା ପିତା ମାତାଙ୍କ ଭାଷା ବ୍ୟକ୍ତି ବିଶେଷର। ୧୯୦୧ ଜନଗଣନାରେ ପିତାମାତାଙ୍କ ଭାଷାକୁ ବଦଳାଇ ସାଧାରଣତଃ ଭାଷା ଭାବେ ପଚରାଗଲା ଏବଂ ୧୯୧୧ମସିହାରେ ଏହି ପ୍ରଶ୍ନଥିଲା ଗୃହରେ ସାଧାରଣତଃ କହୁଥିବା ଭାଷା ୧୯୨୧ରେ ପୁଣି ପ୍ରଶ୍ନଥିଲା, ସାଧାରଣତଃ ବ୍ୟବହୃତଭାଷା ୧୯୩୧ରୁ ୧୯୭୧ମସିହା ମଧ୍ୟରେ ପୁଣି, 'ମାତୃଭାଷା' ପ୍ରଶ୍ନ ଦୋହରାଗଲା। ୧୯୭୧ରେ ମାତୃଭାଷା ସଂପର୍କୀୟ ବ୍ୟବହୃତ ସଂଜ୍ଞା ଥିଲା -"ଜଣେ ବ୍ୟକ୍ତିର ବାଲ୍ୟାବସ୍ଥାରେ ତାଙ୍କ ମାଆ ତାଙ୍କୁ କହୁଥିବା ଭାଷା, ଯଦି ଶିଶୁର ମାଙ୍କ ମୃତ୍ୟୁ ହୋଇଥିଲେ, ବ୍ୟକ୍ତିର ଗୃହରେ ବାଲ୍ୟାବସ୍ଥା ସମୟରେ ମୁଖ୍ୟତଃ କୁହାଯାଇଥିବା ଭାଷାକୁ ମାତୃଭାଷା ଭାବେ ରେକର୍ଡଭୁକ୍ତ କରାଯାଇଥିଲା। ୧୯୩୧ଏବଂ ୧୯୪୧ଜନଗଣନାରେ 'ସାଧାରଣ ବ୍ୟବହାରର ଅନ୍ୟଭାଷା ସଂପର୍କରେ ତଥ୍ୟ ସଂଗ୍ରହ କରାଯାଇଥିଲା। ସେଭଳି ୧୯୫୧ ଏବଂ ୧୯୬୧ ଜନଗଣନାରେ 'ମାତୃଭାଷା'ସାଂଗକୁ ଦ୍ୱିଭାଷୀତ୍ୱ ଉପରେ ପ୍ରଶ୍ନ ଜନଗଣନା ତଫସିଲ ଅନ୍ତର୍ଭୁକ୍ତ ହୋଇଥିଲା। ୧୯୭୧ ରୁ 'ଅନ୍ୟଭାଷା' ସଂପର୍କରେ ତଥ୍ୟ ପ୍ରତ୍ୟେକ ବ୍ୟକ୍ତି ପାଖରୁ ପୁନଃ ସଂଗୃହୀତ ହୋଇଥିଲା ପରବର୍ତ୍ତୀ ଜନଗଣନାଗୁଡ଼ିକରେ। ୧୯୭୧ ଜନଗଣନାକୁ ଅନୁସରଣକରି ଭାଷା ସଂପର୍କୀତ ପ୍ରଶ୍ନ ପଚରା ଯାଇଥିଲା। ୨୦୧୧ ଜନଗଣନାରେ ମାତୃଭାଷାର ସଂଜ୍ଞା ହେଲା "କୌଣସି ବ୍ୟକ୍ତିଙ୍କର ବାଲ୍ୟାବସ୍ଥାରେ ତାଙ୍କ ମାଙ୍କ ସହିତ ଯେଉଁ ଭାଷାରେ କଥାବାର୍ତ୍ତା ହେଉଥିଲେ।" ଭାଷା ସଂପର୍କୀୟ ଅନ୍ୟ ପ୍ରଶ୍ନଟି ହେଲା ମାତୃଭାଷାକୁ ଛାଡି ଦକ୍ଷତା କ୍ରମରେ ଜାଣିଥିବା ସର୍ବାଧିକ, ଦୁଇଟି ଭାଷା ରେକର୍ଡ କରିବାପାଇଁ "ଜାଣିଥିବା ଅନ୍ୟ ଭାଷା"। ଏପରି ପ୍ରଶ୍ନ ୨୦୦୧ ଜନଗଣନାରେ ମଧ୍ୟ ବ୍ୟବହାର କରାଯାଇ ଉତ୍ତରଦାତାଙ୍କ ନିଜ ଆକଳନ ଅନୁଯାୟୀ ସେ ଜାଣିଥିବା ଅନ୍ୟ ଭାଷାକୁ ରେକର୍ଡଭୁକ୍ତ ହୋଇଥିଲା । ଏହି ସଂଦର୍ଭରେ ୨୦୦୧ରେ ଓଡ଼ିଶାର ଭାଷା ଏବଂ ଓଡ଼ିଆ ଭାଷା ସଂପର୍କୀୟ ପରିସ୍ଥିତି, ସେହି ଗଣନାର ତଥ୍ୟ ଉପରେ ପର୍ଯ୍ୟବସିତ, ସଂପର୍କରେ କିଛି ପରିବେଷଣ କରାଯାଇଛି ।

### ଓଡ଼ିଆ ଭାଷା

ଓଡ଼ିଆଭାଷା ସାମ୍ବିଧାନିକ ସ୍ୱୀକୃତି ପାଇଛି ରାଜକୀୟ ଭାଷାଭାବେ ସମ୍ବିଧାନର ଅଷ୍ଟମ ପରିଚ୍ଛେଦରେ ଅନ୍ତର୍ଭୁକ୍ତ କରାଯାଇ । ଏହି ଭାଷା 'ଆର୍ଯ୍ୟ' ପରିବାର ଭାଷା ଏବଂ ମଗଧୀ ଭାଷାର ଉତ୍ତରାଧିକାରୀ ଭାବେ ବର୍ଣ୍ଣିତ । ଆସାମୀ, ବଙ୍ଗାଳୀ, ଏବଂ ମୈଥିଳି ଭାଷା ସହିତ ଏହାର ଅନ୍ତରଙ୍ଗ ସଂପର୍କ ରହିଛି । ଓଡ଼ିଆ ଭାଷାର ଲିଖିତ ପ୍ରସ୍ତର ଲିପିର ପ୍ରାଚୀନତା ୧୦୫୧ ମସିହାରେ ଉରଜଙ୍ଗ ଅଞ୍ଚଳରେ ଆବିଷ୍କୃତ । ଓଡ଼ିଆ ଲିପି, ବ୍ରାହ୍ମୀ ଲିପିରୁ ଆସିଥିଲେ ମଧ୍ୟ, ଏହାର ରୂପ ଦ୍ରାବିଡ ପୁଟରେ ଉଦ୍‌ଭାସିତ ।

ଓଡ଼ିଆ ଭାଷାର ପ୍ରାଚୀନତା ସତ୍ତ୍ୱେ ଏହା ଓଡ଼ିଶାରେ ଶତକଡା ୮୦ଭାଗରୁ ଅଧିକ କେବଳ ଏହାକୁ ମୁଖ୍ୟଭାଷା ଭାବେ ରେକର୍ଡ କରିଛନ୍ତି । ଅନ୍ୟାନ୍ୟ କୌଣସି ପ୍ରଦେଶରେ ଏହି ଭାଷାକୁ ତାତ୍ପର୍ଯ୍ୟପୂର୍ଣ୍ଣ ଜନସଂଖ୍ୟା ଦ୍ୱାରା ଅନ୍ୟ ଭାଷା ଭାବେ କୁହାଯାଇନାହିଁ । ଓଡ଼ିଶାରୁ ଅନେକ ଲୋକ ବର୍ତ୍ତମାନ ଶିକ୍ଷା ପାଇଁ, ଦାଦନ ବା ଅନ୍ୟ ଶ୍ରମିକ ଭାବରେ ଏବଂ କାର୍ଯ୍ୟାନୁସରଣରେ ଅନ୍ୟ ପ୍ରଦେଶକୁ ଯାଉଥିଲା ବେଳେ, ଏଭଳି ସ୍ଥିତି ଦୃଷ୍ଟି

ଆକର୍ଷଣକାରୀ । ଅଧିକନ୍ତୁ ଓଡିଶାରେ ବହୁଲୋକଙ୍କ ବ୍ୟବହୃତ ଭାଷାଭାବେ ହିନ୍ଦୀ ଏବଂ ତେଲଗୁକୁ ରେକର୍ଡ ଭୁକ୍ତ ହୋଇଛି । ୨୦୦୧ର ଜନଗଣନାରେ ଓଡିଆ ଭାଷାକୁ, ଓଡିଶାର ପ୍ରତ୍ୟେକ ଜିଲ୍ଲାରେ ମୁଖ୍ୟ ଭାଷା ରୂପେ ରେକର୍ଡ ହୋଇଅଛି ।

ବିଭିନ୍ନ ଜନଗଣନାରେ ଓଡିଆ ଭାଷା କହୁଥିବା ଜନସଂଖ୍ୟା ୧୯୭୧ରେ ୧୯,୮୬୩,୧୯୮ ଥିଲାବେଳେ ୨୦୦୧ରେ ସଂଖ୍ୟାଥିଲା ୩୩,୦୧୭,୪୪୬ ରେକର୍ଡରୁ ଜଣାପଡେ । ଅନ୍ୟାନ୍ୟ ଭାଷା ପରିପ୍ରେକ୍ଷୀରେ ଓଡିଆ କହୁଥିବା ଜନସଂଖ୍ୟା ଥିଲା ମୋଟ ଜନସଂଖ୍ୟାର ଶତକଡା ୧୯୭୧ରେ ୩.୬୨ ଭାଗ, ୧୯୮୧ରେ ୩.୪୬ ଭାଗ, ୧୯୯୧ରେ ୩.୩୫ ଭାଗ ଏବଂ ୨୦୦୧ ଜନଗଣନାରେ ଶତକଡା ୩.୨୧ ଭାଗ ଥିଲା ।

ଓଡିଆ ଭାଷା ଭାଷୀ ଜନସଂଖ୍ୟାର ବୃଦ୍ଧିଥିଲା ୧୯୭୧-୮୧ ଦଶନ୍ଧିରେ ଶତକଡା ୧୫.୯୦ଭାଗ, ୧୯୮୧-୯୧ ଦଶନ୍ଧିରେ ୨୧.୮୯ ଭାଗ ଏବଂ ୧୯୯୧-୨୦୦୧ରେ ଏହି ବୃଦ୍ଧିହାର କମି ୧୭.୬୬ ଭାଗ ଥିଲା । ଭାଷା ଦୃଷ୍ଟିରୁ ଏହି ବୃଦ୍ଧି କମିବା ଉଦ୍‌ବେଗ ଜନକ । କିନ୍ତୁ ଏହା ବୋଧହୁଏ ଜନସଂଖ୍ୟା ବୃଦ୍ଧି ଓଡିଶାର କମିଥିବାର ପ୍ରତିଫଳନ ତା' ସାଂଗକୁ ଅନ୍ୟ ଭାଷା ଭାଷୀଙ୍କ ଅଧିକ ବୃଦ୍ଧି ବା ଅନ୍ୟ ରିପୋର୍ଟ ଭୁକ୍ତର ଆବିର୍ଭାବ କାରଣ ହୋଇପାରେ, ଯାହା ଅନୁସନ୍ଧାନ ସାପେକ୍ଷ ।

### ଓଡିଶାର ଭାଷା

ଓଡିଶାର ଭାଷା ବିବରକୁ ନେଲେ, ୨୦୦୧ ଜନଗଣନାରେ, ଶତକଡା ୮୧.୦୨ ଭାଗଲୋକ ନିଜ ମାତୃଭାଷା ଓଡିଆ ବୋଲି ଲିପିବଦ୍ଧ କରାଇଛନ୍ତି । କୁଇ ଦ୍ୱିତୀୟ ସ୍ଥାନରେ ରହିଛି, ଶତକଡା ୨.୪୮ ଭାଗ ଦ୍ୱାରା ମାତୃଭାଷା କହିଥିବାରୁ ଏବଂ ତେଲୁଗୁ ରହିଛି ତୃତୀୟ ସ୍ଥାନରେ ଶତକଡା ୧.୯୪ ଭାଗ ଜନସଂଖ୍ୟାର ମାତୃଭାଷା ଭାବେ । କ୍ରମାନୁସାରେ ଅନ୍ୟାନ୍ୟ ମାତୃଭାଷା ଭାବେ ରିପୋର୍ଟଭୁକ୍ତ ଭାଷା ହେଲା- ସାନ୍ତାଳୀ, ଉର୍ଦ୍ଦୁ ଓ ସମ୍ବଲପୁରୀ, ବଙ୍ଗଳା ଓ ହିନ୍ଦୀ ଯାହା ଶତକଡା ୧ ଭାଗରୁ ଅଧିକ ଲୋକ ରିପୋର୍ଟ କରିଛନ୍ତି ।

ସେଭଳି ସଂଖ୍ୟା ଦୃଷ୍ଟିରୁ ଓଡିଶାରେ ପ୍ରଚଳିତ ଭାଷାଗୁଡିକ ଯଥାକ୍ରମେ ମୋଟ ଜନସଂଖ୍ୟାର ଶତକଡା ଭାଗ ହିସାବରେ ୧ରୁ ଅଧିକ ଭାଗ ଥିବ । ଓଡିଆ (୮୩.୦୪) ହିନ୍ଦୀ (୨.୮୩), କୁଇ (୨.୪୯) ତେଲଗୁ (୧.୯୪), ସାନ୍ତାଳୀ (୧.୯୦), ଉର୍ଦ୍ଦୁ (୧.୬୬) ଏବଂ ବଂଗଳା (୧.୩୩) ।

ଜିଲ୍ଲାଓ୍ୱାରୀ ଚିତ୍ର ଅବଲୋକନ କଲେ ଜଣାଯାଏ, ଆଶା କରୁଥିବା ଭଳି ପ୍ରତ୍ୟେକ ଜିଲ୍ଲାରେ ଓଡିଆ ଭାଷା ମୁଖ୍ୟ ଭାଷା । ଶତକଡା ଭାଗ ଦେଖିଲେ ଜଣାପଡେ ଶତକଡା ଭାଗ ୨୨ଟି ଜିଲ୍ଲାରେ ୭୫ରୁ ଅଧିକ ଥିଲାବେଳେ ଆଉ ୯ଟି ଜିଲ୍ଲାରେ ଏହାର ଭାଗ କମ୍ । ଏହି ୯ଟି ଜିଲ୍ଲାର ଶକକଡା ଭାଗ ହେଲା ବରଗଡ (୬୭.୬୫), ଗଜପତି (୪୨.୪), କନ୍ଧମାଳ (୫୧.୯୮), ମାଲାକାନଗିରି (୪୦.୨୮), ମୟୂରଭଞ୍ଜ (୫୪.୫୧), ରାୟଗଡା (୪୨.୯୩), ସମ୍ବଲପୁର, (୬୯.୯୭) ଏବଂ ସୁନ୍ଦରଗଡ (୪୫.୫୩) । ଏହି ଜିଲ୍ଲାଗୁଡିକ କେତେକ ସ୍ଥଳରେ ଆଦିବାସୀ ଅଧ୍ୟୁଷିତ ଏବଂ ସୀମାନ୍ତ ଅଞ୍ଚଳ । ଆଞ୍ଚଳିକ ଭାଷାକୁ ଜନଗଣନାରେ ରିପୋର୍ଟ କରାଯିବା ହେତୁ ଜନଗଣନାରେ ଉତ୍ତରଦାତାଙ୍କ ଉତ୍ତର ଅନୁସାରେ ହିଁ ରେକର୍ଡ କରାଯାଏ । ପ୍ରକ୍ରିୟାର ଆବିର୍ଭାବ ଦ୍ୱାରା ଏହା ସମ୍ଭବ ହୋଇଛି ଅନେକାଂଶରେ ବିଭିନ୍ନ ଜିଲ୍ଲାରେ ରିପୋର୍ଟଭୁକ୍ତ ଲୋକଥିବା ଯଥା: କନ୍ଧମାଳ (୪୬.୮୩) ଦ୍ୱିତୀୟ ଭାଷା ଭାବେ ଏବଂ ରାୟଗଡା (ଶତକଡା ୨୬.୪୮) କୁଇଭାଷା, ବରଗଡ (ଶତକଡା ୨୬.୩୨) ଏବଂ ସମ୍ବଲପୁର (ଶତକଡା ୧୨.୭୯)ରେ ସମ୍ବଲପୁରୀ, ଗଜପତି (ଶତକଡା ୧୯.୯୮)ରେ ସବର, ମାଲକାନଗିରିରେ (୨୨.୨୪ ଶତକଡା) କୋୟା, ମୟୂରଭଞ୍ଜରେ (୨୩.୪ ଶତକଡା) ସାନ୍ତାଳୀ ଏବଂ ସୁନ୍ଦରଗଡରେ (ଶତକଡା ୧୬.୦୫) ସାଜନା/ସାଦ୍ରୀ ଭାଷା ଏହାର ଉଦାହରଣ, ଏହି ଅଦିମ ଜନଜାତିଙ୍କ ଭାଷା, ଆଞ୍ଚଳିକ ଭାଷା ଏବଂ ପଡୋଶୀ ରାଜ୍ୟର ଭାଷା ଦ୍ୱିତୀୟ ଓ ତୃତୀୟ ସ୍ଥାନରେ ଥିଲେ ମଧ୍ୟ ସମଗ୍ର ଜନସଂଖ୍ୟାରେ ମୁଖ୍ୟ ଓଡିଆ ଭାଷାର ଶତକଡା ଭାଗକୁ କମ୍ କରୁଛି । ଓଡିଶାରେ ବିଭିନ୍ନ ଜନଜାତିଙ୍କ ବିଭିନ୍ନ ଭାଷା ରହିଥିବା ବହୁପୂର୍ବରୁ ଜନଗଣନାରେ ରେକର୍ଡଭୁକ୍ତ ହୋଇଅଛି । ତେବେ ସେଗୁଡିକୁ ଜିଲ୍ଲାର ମୁଖ୍ୟଭାଷା ଭାବେ ଉତୁରିବାର ପ୍ରକ୍ରିୟା । ସମ୍ଭବତଃ ନିକଟ ଅତୀତରେ ଏକ ପ୍ରୟାସ କି କିଛି ଜିଲ୍ଲାରେ ସମ୍ବଲପୁରୀକୁ ଦୃଷ୍ଟି ଆକର୍ଷଣ କଲାଭଳି ସଂଖ୍ୟାରେ ଲୋକଙ୍କ ଦ୍ୱାରା ରେକର୍ଡଭୁକ୍ତ କରାଯିବା, ଏକ ଆଞ୍ଚଳିକ ଭାଷାର ଜାହିର କରିବା ପ୍ରଚେଷ୍ଟାର ଅଂଶ ବିଶେଷ ହୋଇପାରେ ।

### ସମ୍ବଲପୁରୀ ଭାଷା ସମ୍ବନ୍ଧରେ କିଛି

କେତେକଙ୍କ ମତରେ ଦ୍ୱାଦଶ ଶତାବ୍ଦୀରୁ ସୋନପୁର ଜିଲ୍ଲାର ସ୍ତମ୍ଭେଶ୍ୱରୀ ଶିଳାଲିପିରେ ସମ୍ବଲପୁରୀ ଭାଷା ସଂପର୍କରେ

ଜଣାଯାଏ । ତେବେ ବିଂଶ ଶତାବ୍ଦୀର ମଧ୍ୟ ଭାଗରୁ କଥିତ ଭାଷାରୁ ଲିଖିତ ଭାଷା ରୂପଦେବା ପ୍ରଚେଷ୍ଟା ଜାରି ରହିଲା । ବର୍ତ୍ତମାନ ଟେଲିଭିଜନ ଓ ସମ୍ବାଦପତ୍ରରେ ଏହି ଭାଷାର ପ୍ରତିବେଦନ ଏବଂ ଲିଖତ ସାହିତ୍ୟର ବହୁଳତା, ଏ ଭାଷା ବିଷୟରେ ସଚେତନତା ଦିଗରେ ସହାୟକ ହୋଇଛନ୍ତି । ଅନେକ ପୁସ୍ତକ ରଚନା, ଗୀତ, ଗଳ୍ପ, ଏବଂ ଅନ୍ୟାନ୍ୟ ଗଦ୍ୟ ସାହିତ୍ୟ ପୁଷ୍ଟତା ଦ୍ୱାରା ଏଭାଷା ନିଜକୁ ଜାହିର୍ କରିବାରେ ହୁଏତ ସମର୍ଥ ହୋଇଛି । ଏହି ପ୍ରକ୍ରିୟାର ପ୍ରତିଫଳନ ହୁଏତ ଜନଗଣନାରେ ଦୁଇ ତିନୋଟି ଜିଲ୍ଲାରେ ରିପୋର୍ଟଭୁକ୍ତ ହୋଇଛି । ଏକ ତୃତୀୟାଂଶ ଜିଲ୍ଲା ପଶ୍ଚିମ ଓଡିଶାର ଭାଷା କହୁଥିଲାବେଳେ କେବଳ ଦୁଇ ତିନୋଟି ଜିଲ୍ଲାରେ ଏହାକୁ ଲୋକଙ୍କ ଦ୍ୱାରା ଦ୍ୱିତୀୟ ବା ତୃତୀୟ ଗୁରୁତ୍ୱପୂର୍ଣ୍ଣ ସଂଖ୍ୟାରେ ରିପୋର୍ଟଭୁକ୍ତ ହେବା ଦୃଷ୍ଟି ଆକର୍ଷଣୀୟ ।

**ଉପସଂହାର**

କୌଣସି ବି ଭାଷା ପୁଷ୍ଟହୁଏ ସେଇ ଅଞ୍ଚଳର କଥିତ/ଲିଖିତ ଭାଷାରୁ ବା ଅନ୍ୟ ଭାଷାଭାଷୀ ସେ ଅଞ୍ଚଳରେ ବସବାସକରୁଥିଲେ ସେମାନଙ୍କ ଭାଷାରୁ ଶବ୍ଦ ଆହରଣ କରି । ଏହାହିଁ ଗୋଟିଏ ଭାଷାର ଉତ୍ତରର ମୂଳମନ୍ତ୍ର । ଭାଷା ନିଜକୁ ନିଜକୁ ନିଜେ ସହିବାର ଶକ୍ତିର ଉଦ୍ରେକ ଏବଂ ଗ୍ରହଣ କରିବାର ପ୍ରଚେଷ୍ଟା ନକଲେ ପଛରେ ପଡିଯିବ । ଜନଗଣନାର ବିଭିନ୍ନ ଭାଷା ବିଷୟରେ ତଥ୍ୟ ସେଇ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । ଏହା ଭାଷାଭାଷୀଙ୍କ ସଂଖ୍ୟା କେବଳ ଦିଏ ନାହିଁ । ବିଭିନ୍ନ ଭାଷାର କମ୍ ବେଶୀର କ୍ରମ ସଂପର୍କରେ ସୂଚନା ଦିଏ । ଏହି ତଥ୍ୟର ଉପଯୁକ୍ତ ବ୍ୟବହାର, ଏ କ୍ଷେତ୍ରରେ ବିଶେଷ କରି ଓଡିଶାର ଭାଷା ଓ ଓଡିଆ ଭାଷାର ପ୍ରଗତି ଦିଗରେ ପ୍ରଚେଷ୍ଟା କରିବାରେ ସାହାଯ୍ୟ କରିବ ଆଶା କରି ଏହି ମୃଦୁ ଅନୁଶୀଳନ ଉପସଂହାର କରେ ।



ଜନଗଣନା କାର୍ଯ୍ୟକ୍ରମର ପ୍ରଚାର ଉଦ୍ଦେଶ୍ୟରେ ଆୟୋଜିତ ଏକ ପଥପ୍ରାନ୍ତ ନାଟକ ।

# ଓଡ଼ିଶାରେ ଭିନ୍ନକ୍ଷମ ୨୦୦୧ ଜନଗଣନାରୁ

ସମାଜରେ ଭିନ୍ନକ୍ଷମ ଏବେ ବି ଅବହେଳିତ। ତାଙ୍କ ସମ୍ବନ୍ଧରେ ପ୍ରଶ୍ନ ପଚାରିଲେ କୁଣ୍ଠାର ପରିପ୍ରକାଶ ଏଭଳି ସ୍ଥିତିରେ ସ୍ୱାଭାବିକ ଏବଂ ସମ୍ବେଦନଶୀଳ। ପରିବର୍ତ୍ତିତ ପୃଥିବୀରେ ଭିନ୍ନକ୍ଷମଙ୍କ ସକ୍ଷମତା ଓ ଅଧିକାର ବିଷୟରେ ସଚେତନତା ଭାରତର ଜନଗଣନାକୁ ଆପାତତଃ ଅସାଧ କାମକୁ ହାତକୁ ନେବାକୁ ପ୍ରେରିତ କରିଛି। ଭିନ୍ନକ୍ଷମଙ୍କ ସମ୍ବନ୍ଧରେ ତଥ୍ୟ ଜନଗଣନାର ପ୍ରଶ୍ନ ମାଧ୍ୟମରେ ଆଣିବା କଷ୍ଟସାଧ ହେଲେ ବି ୨୦୦୧ର ଜନଗଣନା ଏହାକୁ କିଛିଟା ସମ୍ଭବ କରିଥିଲା। ଭାରତର ଏକ ଅଂଶ ଭାବରେ ଓଡ଼ିଶାରେ ମଧ ଭିନ୍ନକ୍ଷମମାନଙ୍କ ସଂପର୍କରେ କିଛି ତଥ୍ୟ ସଂଗୃହୀତ ହୋଇଥିଲା ୨୦୦୧ ଜନଗଣନାରେ। ଯଦିଓ ଏ ତଥ୍ୟର ପ୍ରକାର ସୀମିତ ଏବଂ ସଂପୂର୍ଣ୍ଣ ନ ହେଇପାରେ, ଭିନ୍ନକ୍ଷମଙ୍କ ପାଇଁ ବିଭିନ୍ନ କାର୍ଯ୍ୟକ୍ରମର ରୂପାୟନ ଦିଗରେ ଏବଂ ସେମାନଙ୍କ ସଂପର୍କରେ ପରବର୍ତ୍ତୀ କାଳରେ ଅଧିକ ଗୁରୁତ୍ୱପୂର୍ଣ୍ଣ ଏବଂ ସଂପୂର୍ଣ୍ଣ ତଥ୍ୟ ଆକଳନ ପାଇଁ ସହାୟକ। ଏହି ପରିପ୍ରେକ୍ଷୀରେ ଏହି ବିଶ୍ଳେଷଣ ଓ ଅନୁଶୀଳନର ପ୍ରତିବେଦନ।

### ଭିନ୍ନକ୍ଷମ କିଏ ?

'ଭିନ୍ନକ୍ଷମତା, ଏକ ଶାରୀରିକ ଏବଂ ମାନସିକ ନ୍ୟୂନତା, ଯାହା ଜୀବନର ଏକ ବା ଅଧିକ କାର୍ଯ୍ୟକୁ ଆଖିଦୃଶିଆ ଭାବେ ସୀମାବଦ୍ଧ କରିଥାଏ।' ଜନଗଣନାରେ ଏଭଳି ବ୍ୟାପକ ସଂଜ୍ଞାର ବ୍ୟବହାର କରାଯାଇଛି। ତେବେ ଏହି ନ୍ୟୂନତାକୁ ଶରୀରର ବିଭିନ୍ନ ଆଙ୍ଗିକ ଏବଂ ମାନସିକ ସ୍ତର ସହିତ ସଂପର୍କ ଭେଦରେ ବିଭିନ୍ନ ପ୍ରକାରରେ ବିଭକ୍ତ କରାଯାଇଛି। ବିଭିନ୍ନ ପ୍ରକାର ଭିନ୍ନକ୍ଷମତା ହେଲା ଯଥାକ୍ରମେ ଦେଖିବାରେ, ଶୁଣିବାରେ, କହିବାରେ, ଚଳପ୍ରଚଳନରେ, ମାନସିକ ଅନଗ୍ରସର, ମାନସିକ ରୋଗୀ ଏବଂ ଅନ୍ୟାନ୍ୟ। ୨୦୦୧ରେ ଏକାଧିକ ଭିନ୍ନକ୍ଷମତା ଥିବା କ୍ଷେତ୍ରରେ କେବଳ ଗୋଟିଏ ଭିନ୍ନକ୍ଷମତାକୁ ରେକର୍ଡଭୁକ୍ତ କରାଯାଇଥିବା ସ୍ଥଳେ, ୨୦୧୦ରେ ଆଉ ଏକ ପ୍ରକାର ଯୋଡ଼ାଯାଇଛି ଏକାଧିକ ଭିନ୍ନକ୍ଷମତା ଦୁଇ ବା ତତୋଧିକ ଭିନ୍ନକ୍ଷମତା ପାଇଁ ତେବେ ତିନୋଟି ଭିନ୍ନକ୍ଷମତା ଏ କ୍ଷେତ୍ରରେ ବିଚାରକୁ ନେବାପାଇଁ କୁହାଯାଇଛି। ପ୍ରତ୍ୟେକ ପ୍ରକାର ସଂଜ୍ଞାକୁ ଯେତେଦୂର ସମ୍ଭବ ବ୍ୟାପକ ଏବଂ ସରଳ କରାଯାଇଛି ଜନଗଣନାର ନିର୍ଦ୍ଦେଶାବଳୀ ମାଧ୍ୟମରେ। ପ୍ରତ୍ୟେକ ଭିନ୍ନକ୍ଷମତାର ସଂଜ୍ଞା ପ୍ରବନ୍ଧକୁ ଭାରାକ୍ରାନ୍ତ କରିବାର ସମ୍ଭାବନା ଥିବାରୁ ସେଥିରୁ ନିବୃତ ହେବା ଆବଶ୍ୟକ ହେଲା। ତେବେ ଜନଗଣନାରେ ବ୍ୟବହୃତ ସଂଜ୍ଞା ଏବଂ ତଥ୍ୟ ଆହରଣର ପ୍ରଣାଳୀ ଓ ପ୍ରଚେଷ୍ଟା ଯେ ଯେତେ ଅଦୃଶ୍ୟ ବ୍ୟକ୍ତିଙ୍କୁ ଦୃଶ୍ୟ କରିବାକୁ ସାହାଯ୍ୟ କରିବ, ଏଥିରେ ସନ୍ଦେହ ନାହିଁ।

### ଭିନ୍ନକ୍ଷମଙ୍କ ସଂଖ୍ୟା - ଓଡ଼ିଶା ବନାମ୍ ଭାରତ

ଭାରତରେ ୨୦୦୧ ଜନଗଣନାରେ ଭିନ୍ନକ୍ଷମଙ୍କ ସଂଖ୍ୟା ୨ କୋଟି ୧୯ଲକ୍ଷରୁ ଅଧିକ ହୋଇଥିଲା ବେଳେ ଓଡ଼ିଶାରେ ସେମାନଙ୍କ ସଂଖ୍ୟା ଦଶଲକ୍ଷ ୨୦ହଜାରରୁ ବେଶୀ। ଓଡ଼ିଶାର ଭିନ୍ନକ୍ଷମଙ୍କ ସଂଖ୍ୟା ଭାରତରେ ଗଣାହୋଇଥିବା ଭିନ୍ନକ୍ଷମଙ୍କ ଶତକଡ଼ା ୪.୬୬ ଭାଗ। ଭାରତରେ ଭିନ୍ନକ୍ଷମଙ୍କ ସଂଖ୍ୟା ମୋଟ ଜନସଂଖ୍ୟାର ପ୍ରତି ଲକ୍ଷରେ ୨୧୩୦। ଓଡ଼ିଶାର ଭିନ୍ନକ୍ଷମଙ୍କ ସଂଖ୍ୟା ତଦନୁସାରେ ୨୭୭୫ ପ୍ରତି ଲକ୍ଷେ ଜନସଂଖ୍ୟାରେ ବିଭିନ୍ନ ପ୍ରକାର ଭିନ୍ନକ୍ଷମତା ବିଚାରକୁ ନେଲେ, ଭାରତରେ ଚିତ୍ର ହେଲା ମୋଟ ଭିନ୍ନକ୍ଷମମାନଙ୍କ ମଧ୍ୟରୁ ଶତକଡ଼ା ଭାଗ ବିଚାରରେ, ଦେଖିବାରେ (୪୮.୫), କହିବାରେ (୭.୫), ଶୁଣିବାରେ (୫.୮), ଚଳପ୍ରଚଳନରେ (୨୭.୯), ମାନସିକ (୧୦.୩)। ପୁରୁଷ ଓ ସ୍ତ୍ରୀମାନଙ୍କ କ୍ଷେତ୍ରରେ ସମାନ ପ୍ରତିରୂପ ଦୃଷ୍ଟ ହୁଏ। ଓଡ଼ିଶା କ୍ଷେତ୍ରରେ ସେଭଳି ଶତକଡ଼ା ଭାଗ ହେଲା ଯଥାକ୍ରମେ ୫୦.୩, ୬.୭, ୮.୨, ୨୪.୬ ଏବଂ ୧୦.୧। କେତେକ କ୍ଷେତ୍ର ଯଥା ଦେଖିବାରେ ଏବଂ ଶୁଣିବାରେ ଅକ୍ଷମତାରେ ଓଡ଼ିଶା ଭାରତ ତୁଳନାରେ ଅଧିକ ରିପୋର୍ଟ କରିଥିବା ବେଳେ, ଅନ୍ୟାନ୍ୟ କ୍ଷେତ୍ରରେ ଏହା କମ୍।

### ଓଡ଼ିଶାର ଜିଲ୍ଲାଗୁଡ଼ିକରେ ଭିନ୍ନକ୍ଷମ

ଜନସଂଖ୍ୟା ତୁଳନାରେ ପ୍ରତି ଜିଲ୍ଲାର ଶତକଡ଼ା ଭିନ୍ନକ୍ଷମ ବିଚାରକୁ ନେଲେ ବିଶେଷ ପାର୍ଥକ୍ୟ ପରିଲକ୍ଷିତ ହୁଏ ନାହିଁ । ଏହାର କେନ୍ଦୁଝର ଓ ମାଲକାନାଗିରି (୨.୨)ରେ ସବୁଠୁ କମ୍ ଏବଂ ପୁରୀ (୩.୮) ଜିଲ୍ଲାରେ ସବୁଠୁ ବେଶୀ । ସେଭଳି ପୁରୁଷଙ୍କ କ୍ଷେତ୍ରରେ ଏହାର ମାଲକାନାଗିରି (୨.୪) ଥିଲାବେଳେ ପୁରୀ (୪.୨) ଜିଲ୍ଲାରେ ସବୁଠୁ ବେଶୀ । ସ୍ତ୍ରୀ ଭିନ୍ନକ୍ଷମ ହାର ବିଚାରକୁ ମାଲକାନାଗିରି (୨.୦) ସବୁଠୁ କମ୍ ଏବଂ ପୁରୀ (୩.୪) ସବୁଠୁ ବେଶୀ । ସମସ୍ତ କ୍ଷେତ୍ରରେ ବିଭିନ୍ନ ଜିଲ୍ଲାରେ କ୍ରମରେ ସମାନତା ରହିଛି । ବରଗଡ଼ (୩.୧), ଝାରସୁଗୁଡ଼ା (୩.୦), ସମ୍ବଲପୁର (୩.୦), ଦେବଗଡ଼ (୩.୬), କେନ୍ଦ୍ରାପଡ଼ା (୨.୯), ଯାଜପୁର (୩.୨), ଖୋର୍ଦ୍ଧା (୩.୩), ପୁରୀ (୩.୮) ଓ ଗଞ୍ଜାମ (୨.୯) କ୍ଷେତ୍ରରେ ଭିନ୍ନକ୍ଷମଙ୍କ ଅନୁପାତ ରାଜ୍ୟ ହାରଠାରୁ ବେଶୀ । ଅନ୍ୟ ଜିଲ୍ଲା କ୍ଷେତ୍ରରେ ଏହା ରାଜ୍ୟ ହାରଠାରୁ କମ୍ । ଅଧିକ ଯତ୍ନ ନେଲେ ହୁଏତ ଭିନ୍ନକ୍ଷମଙ୍କ ଗଣନା ସଠିକ୍ ହେବାର ସଂଭାବନା ଉପରେ ଭିତ୍ତିକରି ପ୍ରତ୍ୟେକ ଜିଲ୍ଲାରେ କାର୍ଯ୍ୟକ୍ରମ ଆବଶ୍ୟକ ପ୍ରତି ଜିଲ୍ଲାର ବିଶେଷ ପରିସ୍ଥିତିକୁ ବିଚାରକୁ ନେଇ ।

### ବାସସ୍ଥାନ ଭେଦରେ ଜିଲ୍ଲା ସ୍ତରରେ ଭିନ୍ନକ୍ଷମତା

ଓଡ଼ିଶାର ମୋଟ ଭିନ୍ନକ୍ଷମମାନଙ୍କରୁ ଶତକଡ଼ା ୮୬ ଭାଗ ଗ୍ରାମାଞ୍ଚଳ ଏବଂ ଶତକଡ଼ା ୧୪ ଭାଗ ସହରାଞ୍ଚଳରେ ରହିଛନ୍ତି । ଏଭଳି ବିତରଣ ମୋଟ ଜନସଂଖ୍ୟାର ବିତରଣ ସହିତ ପ୍ରାୟ ସମାନ ପ୍ରକାରର ଏବଂ ଏହା ଲିଙ୍ଗ ଭେଦରେ ମଧ୍ୟ ପ୍ରାୟତଃ ସମାନ ଯଦିଓ ସ୍ତ୍ରୀମାନଙ୍କ କ୍ଷେତ୍ରରେ ସହରାଞ୍ଚଳର ଅନୁପାତ କିଛି କମ୍ । ଜିଲ୍ଲାୱାରୀ ଆଲୋଚନା କଲେ ଦେଖାଯାଏ, ବୌଦ୍ଧ (ଶତକଡ଼ା ୯୫.୯) ଜିଲ୍ଲାରେ ଗ୍ରାମାଞ୍ଚଳରେ ସର୍ବାଧିକ ଭିନ୍ନକ୍ଷମ ଥିଲାବେଳେ ସେଭଳି ସର୍ବନିମ୍ନ ଅନୁପାତ ଖୋର୍ଦ୍ଧା (ଶତକଡ଼ା ୬୦.୨) ଜିଲ୍ଲାରେ । ଗ୍ରାମାଞ୍ଚଳରେ ରାଜ୍ୟ ଅନୁପାତରୁ ଅଧିକ ଥିବା ଅନ୍ୟ ଜିଲ୍ଲାଗୁଡ଼ିକ ହେଲା, ବରଗଡ଼ (୯୨.୨), ଦେବଗଡ଼ (୯୪.୦), କେନ୍ଦୁଝର (୮୬.୨), ମୟୂରଭଞ୍ଜ (୯୩.୪), ବାଲେଶ୍ୱର (୯୦.୨), ଭଦ୍ରକ (୯୦.୭), କେନ୍ଦ୍ରାପଡ଼ା (୯୪.୫), ଜଗତସିଂହପୁର (୯୦.୭), ଯାଜପୁର (୯୫.୫), ଢେଙ୍କାନାଳ (୯୧.୨), ଅନୁଗୁଳ (୮୭.୨), ନୟାଗଡ଼ (୯୫.୮), ପୁରୀ (୮୯୨୫), ଗଜପତି (୯୨.୬), କନ୍ଧମାଳ (୬୧.୬), ସୋନପୁର (୬୩.୫), ବଲାଙ୍ଗିର (୮୯.୨), ନୂଆପଡ଼ା (୯୩.୯), କଳାହାଣ୍ଡି (୯୨.୨), ରାୟଗଡ଼ା (୮୬.୨), ନବରଙ୍ଗପୁର (୯୨.୭) ଓ ମାଲ୍‌କାନଗିରି (୯୨.୮) । ରାଜ୍ୟ ସ୍ତରରୁ କମ୍ ଥିବା ଅନ୍ୟ ଜିଲ୍ଲାଗୁଡ଼ିକ ହେଲା, ଝାରସୁଗୁଡ଼ା (୭୦.୮), ସମ୍ବଲପୁର (୭୫.୪୫), ସୁନ୍ଦରଗଡ଼ (୬୮.୫), କଟକ (୭୪.୮) ଓ କୋରାପୁଟ (୮୧.୭) । ଏ ଅନୁପାତଗୁଡ଼ିକ ଜିଲ୍ଲାର ସହରାଞ୍ଚଳ ଏବଂ ଗ୍ରାମାଞ୍ଚଳର ଅନୁପାତର ପ୍ରତିଫଳନ ହୁଏତ କିଛିଟା ହୋଇପାରେ । ତେବେ ଜିଲ୍ଲାଗୁଡ଼ିକର ଅନଗ୍ରସରତା ଇତ୍ୟାଦି ପରିପ୍ରେକ୍ଷୀରେ ଏହି ଆକଳନଗୁଡ଼ିକୁ ଅଧିକ ବିଶ୍ଳେଷଣର ଆବଶ୍ୟକତା ରହିଛି ।

### ଜିଲ୍ଲାୱାରୀ ଲିଙ୍ଗ ଭେଦରେ ଭିନ୍ନକ୍ଷମ

ଓଡ଼ିଶାର ଭିନ୍ନକ୍ଷମଙ୍କ ମଧ୍ୟରେ ଶତକଡ଼ା ୫୫.୭ ଭାଗ ପୁରୁଷ ଏବଂ ୪୪.୩ ଭାଗ ସ୍ତ୍ରୀ । ସହରାଞ୍ଚଳରେ ଏହି ଅନୁପାତ ୫୮.୧ ଓ ୪୧.୯ ହୋଇଥିଲା ବେଳେ ଗ୍ରାମାଞ୍ଚଳରେ ପୁରୁଷ ୫୫.୩ ଏବଂ ସ୍ତ୍ରୀ ୪୪.୭ । ଜିଲ୍ଲାଗୁଡ଼ିକରେ ପୁରୁଷଙ୍କ ଅନୁପାତ ସର୍ବୋଚ୍ଚ ଯାଜପୁର (୫୮.୩) ଏବଂ ସର୍ବନିମ୍ନ କଳାହାଣ୍ଡି (୫୧.୧) ଏବଂ ରାୟଗଡ଼ା (୫୧.୧) । ରାଜ୍ୟ ହାରଠାରୁ ପୁରୁଷଙ୍କ କ୍ଷେତ୍ରରେ ଅଧିକ ଅନୁପାତରେ ଭିନ୍ନକ୍ଷମ ଥିବା ଜିଲ୍ଲାଗୁଡ଼ିକ ହେଲା, ଦେବଗଡ଼ (୫୭.୩), ବାଲେଶ୍ୱର (୫୭.୫), ଭଦ୍ରକ (୫୭.୪), କେନ୍ଦ୍ରାପଡ଼ା (୫୬.୯), ଜଗତସିଂହପୁର (୫୭.୮), କଟକ (୫୭.୯), ଯାଜପୁର (୫୮.୩), ଢେଙ୍କାନାଳ (୫୭.୭), ଅନୁଗୁଳ (୫୭.୦), ନୟାଗଡ଼ (୫୭.୬), ଖୋର୍ଦ୍ଧା (୫୮.୧), ପୁରୀ (୫୬.୦) ଓ ସୋନପୁର (୫୬.୬) । ଏ ମଧ୍ୟରୁ ଅଧିକାଂଶ ଜିଲ୍ଲା ଉପକୂଳ ଅଞ୍ଚଳର । ବୋଧହୁଏ ଏହି ଅଞ୍ଚଳରେ ଅଧିକ ଶିକ୍ଷିତ ଥିବାରୁ ପୁରୁଷ ଭିନ୍ନକ୍ଷମଙ୍କ ଗଣନା ଅଧିକ ହୋଇଛି । ସ୍ତ୍ରୀ ଭିନ୍ନକ୍ଷମଙ୍କ ଗଣନା ପାଇଁ ତେଣୁ ବିଶେଷ ଯତ୍ନ ଆବଶ୍ୟକ ।

### ଜିଲ୍ଲାଗୁଡ଼ିକରେ ପ୍ରକାର ଭେଦରେ ଭିନ୍ନକ୍ଷମ

ଆଗରୁ କୁହାଯାଇଛି, ଜନଗଣନାରେ ଭିନ୍ନ ଭିନ୍ନ ପ୍ରକାରର ଭିନ୍ନକ୍ଷମଙ୍କ ସଂପର୍କରେ ତଥ୍ୟ ସଂଗ୍ରହ କରାଯାଇଛି । ବିଭିନ୍ନ ପ୍ରକାରର ଭିନ୍ନକ୍ଷମଙ୍କ ଜିଲ୍ଲାଗୁଡ଼ିକରେ ସ୍ଥିତିର ଆଲୋଚନା ପ୍ରାସଂଗିକ ଏବଂ ନୀତି ନିର୍ଦ୍ଧାରଣ ପାଇଁ ସାହାଯ୍ୟ କରିବ । ସେ ଦୃଷ୍ଟିରୁ ସମଗ୍ର ଭିନ୍ନକ୍ଷମଙ୍କ ମଧ୍ୟରେ ଗୋଟିଏ ପ୍ରକାର ଭିନ୍ନକ୍ଷମର ଭାଗକୁ ବିଚାରକୁ ନିଆଯାଇ ଏଠାରେ ସନ୍ନିବେଶିତ କରାଯାଇଛି । ଓଡ଼ିଶାର ଭିନ୍ନକ୍ଷମଙ୍କ ମଧ୍ୟରୁ ଶତକଡ଼ା ୫୦.୩ ଭାଗ ଦେଖିବାରେ, ୬.୭ ଭାଗ କହିବାରେ, ୮.୨ ଭାଗ ଶୁଣିବାରେ, ୨୪.୬

ଭାଗ ଚଳପ୍ରଚଳନ ହେବାରେ ଏବଂ ୧୦.୧ ଭାଗ ମାନସିକ ହିସାବରେ ଭିନ୍ନକ୍ଷମ ବୋଲି ଗଣା ହୋଇଛନ୍ତି । ଏହି କ୍ରମ ପ୍ରାୟ ପ୍ରତ୍ୟେକ ଜିଲ୍ଲାରେ ପରିଲକ୍ଷିତ ହୁଏ କିଛି ପଏଣ୍ଟ ତଫାତ୍ ଥାଇ । ଦେଖିବାରେ ଭିନ୍ନକ୍ଷମ ହୋଇଥିବା ବ୍ୟକ୍ତିଙ୍କ ଅନୁପାତ, ସର୍ବୋଚ୍ଚ ରାୟଗଡ଼ା (୬୨.୮) ଏବଂ ସର୍ବନିମ୍ନ ଜଗତ୍‌ସିଂହପୁରରେ (୩୯.୪) ରେକର୍ଡ଼ଭୁକ୍ତ । ରାଜ୍ୟ ହାରରୁ ଅଧିକ ଥିବା ଜିଲ୍ଲାଗୁଡ଼ିକ ଏହି ଭିନ୍ନକ୍ଷମତା ପାଇଁ ହେଲା, ବରଗଡ଼ (୫୧.୭), ଝାରସୁଗୁଡ଼ା (୫୦.୯), ସମ୍ବଲପୁର (୫୦.୯), ଦେବଗଡ଼ (୫୫.୭), ଭଦ୍ରକ (୫୫.୫), ଅନୁଗୁଳ (୫୪.୫), ନୟାଗଡ଼ (୫୧.୯), ଖୋର୍ଦ୍ଧା (୫୬.୯), ପୁରୀ (୫୫.୯), ଗଞ୍ଜାମ (୫୮.୭), କନ୍ଧମାଳ (୫୦.୪), ବୌଦ୍ଧ (୫୨.୪), କଳାହାଣ୍ଡି (୫୦.୪), ରାୟଗଡ଼ା (୬୨.୮), ନବରଙ୍ଗପୁର (୬୦.୯), କୋରାପୁଟ (୫୯.୩) ଓ ମାଲକାନଗିରି (୫୩.୪) । ଏହି ଜିଲ୍ଲାଗୁଡ଼ିକରେ ଚକ୍ଷୁ ସମ୍ପର୍କିତ କାର୍ଯ୍ୟକ୍ରମର ଦୃଶ୍ୟମାନତା ଅଧିକ ଭଲ ଭାବରେ ରିପୋର୍ଟ କରିବାରେ ସାହାଯ୍ୟ କରିଥାଇପାରେ । ତେବେ ସେଠାରେ ଦୃଷ୍ଟିଦାନ ଇତ୍ୟାଦି କାର୍ଯ୍ୟକ୍ରମକୁ ସଫଳ କରିବାକୁ ପଦକ୍ଷେପ ନିଆଯାଇପାରେ । କହିବାରେ ଭିନ୍ନକ୍ଷମଙ୍କ ଅନୁପାତ ସର୍ବୋଚ୍ଚ ନୂଆପଡ଼ା (୯.୫୪) ଜିଲ୍ଲାରେ ଏବଂ ସର୍ବନିମ୍ନ ପୁରୀ ଜିଲ୍ଲାରେ (୪.୯) । ଶୁଣିବାରେ ଭିନ୍ନକ୍ଷମଙ୍କ ଅନୁପାତ ସର୍ବୋଚ୍ଚ ବାଲେଶ୍ୱର (୧୧.୮) ଏବଂ ସର୍ବନିମ୍ନ ଗଞ୍ଜାମ (୪.୭) ଜିଲ୍ଲାରେ । ଚଳପ୍ରଚଳନ ହେବାରେ ଭିନ୍ନକ୍ଷମଙ୍କ ଅନୁପାତ ସର୍ବୋଚ୍ଚ ବଲାଙ୍ଗିର (୩୧.୫) ଜିଲ୍ଲା ଏବଂ ସର୍ବନିମ୍ନ ରାୟଗଡ଼ା (୧୭.୪) । ମାନସିକ ଭିନ୍ନକ୍ଷମଙ୍କ ସର୍ବୋଚ୍ଚ ଅନୁପାତ ଜଗତସିଂହପୁର (୧୪.୦) ଏବଂ ସର୍ବନିମ୍ନ ଗଜପତି (୬.୮) । ଏଠାରେ ଭିନ୍ନ ପ୍ରକାର ଭିନ୍ନକ୍ଷମତାର ଜିଲ୍ଲାମାନଙ୍କ ମଧ୍ୟରେ ଥିବା ବ୍ୟବଧାନକୁ ଦର୍ଶାଯାଇଛି । ପ୍ରତ୍ୟେକ ଜିଲ୍ଲା ପାଇଁ କାର୍ଯ୍ୟକ୍ରମ କଲା ବେଳେ ବିଚାର୍ଯ୍ୟ ସେହି ଜିଲ୍ଲାର ଭିନ୍ନକ୍ଷମମାନଙ୍କ ପ୍ରକାର ଭେଦ ।

### ଭିନ୍ନକ୍ଷମଙ୍କ ସଫଳତା

ସମଗ୍ର ଭିନ୍ନକ୍ଷମଙ୍କ ମଧ୍ୟରେ ସାକ୍ଷରତା ହାର ଜଣାଇ ଦେବ ସେମାନେ ବି ସଚେତନ । ସେହି ଦୃଷ୍ଟିରୁ ଭିନ୍ନକ୍ଷମ ସାକ୍ଷରଙ୍କ ଅନୁପାତ ଗୁରୁତ୍ୱପୂର୍ଣ୍ଣ । ଭାରତରେ ଶତକଡ଼ା ୪୯.୩ ଭାଗ ଭିନ୍ନକ୍ଷମ ସାକ୍ଷର ଥିଲାବେଳେ ଓଡ଼ିଶାରେ ଏହା ୪୮.୮ ଭାଗ । ସେହିଭଳି ଓଡ଼ିଶାର ଜିଲ୍ଲାଗୁଡ଼ିକୁ ବିଚାରକୁ ନେଲେ, ଓଡ଼ିଶା ହାରରୁ ବେଶୀ ଥିବା ଜିଲ୍ଲାଗୁଡ଼ିକ ହେଲା, ଝାରସୁଗୁଡ଼ା (୫୨.୮), ସମ୍ବଲପୁର (୫୧.୭), ବାଲେଶ୍ୱର (୫୪.୧), ଭଦ୍ରକ (୫୮.୭), କେନ୍ଦ୍ରାପଡ଼ା (୫୮.୬), ଜଗତସିଂହପୁର (୫୮.୮), କଟକ (୫୮.୦), ଯାଜପୁର (୫୬.୮), ଢେଙ୍କାନାଳ (୫୩.୫), ଅନୁଗୁଳ (୫୨.୮), ନୟାଗଡ଼ (୫୪.୧), ଖୋର୍ଦ୍ଧା (୬୪.୫) ଏବଂ ପୁରୀ (୬୦.୮) । ଅନ୍ୟ ଜିଲ୍ଲାଗୁଡ଼ିକରେ ଭିନ୍ନକ୍ଷମଙ୍କ ପାଇଁ ସ୍ୱତନ୍ତ୍ର ସାକ୍ଷରତା କାର୍ଯ୍ୟକ୍ରମ ଆବଶ୍ୟକ । ତାଙ୍କୁ ଅଧିକ ଯୋଗ୍ୟ କରିବା ପାଇଁ, ବିଶେଷ ତାଲିମ ଦେବାପାଇଁ । ବେଶୀ ଭିନ୍ନକ୍ଷମ ସାକ୍ଷର ଜିଲ୍ଲାଗୁଡ଼ିକ ମଧ୍ୟ ସାକ୍ଷରତାରେ ସାଧାରଣ ଭାବରେ ଉନ୍ନତ ଜିଲ୍ଲା ଏବଂ ବିଶେଷକରି ଉପକୂଳ ଅଞ୍ଚଳର । କମ୍ ସାକ୍ଷରତା ଥିବା ଜିଲ୍ଲାଗୁଡ଼ିକ ମଧ୍ୟ ଆଦିବାସୀ ଅଧ୍ୟୁଷିତ । ତେଣୁ ଭିନ୍ନକ୍ଷମ ଏବଂ ବିଶେଷ କରି ଆଦିବାସୀ ଭିନ୍ନକ୍ଷମଙ୍କ ପାଇଁ ଅଧିକ ଦୃଷ୍ଟି ଦିଆଯିବା ଆବଶ୍ୟକ କାରଣ ସେମାନେ ଦୁଇଟି ଅସୁବିଧାର ଶୀକାର ହୋଇଥାନ୍ତି ।

ଭିନ୍ନକ୍ଷମମାନଙ୍କ ମଧ୍ୟରେ କର୍ମୀଙ୍କ ଅନୁପାତ, ସୂଚାଇଦିଏ ସେମାନେ ବି ସକ୍ଷମ । ପୁଣି ବିଭିନ୍ନ ନିଯୁକ୍ତି କ୍ଷେତ୍ରରେ ଭିନ୍ନକ୍ଷମଙ୍କ ପାଇଁ ସଂରକ୍ଷଣ ରହିଥିବାରୁ ଏହି ତଥ୍ୟ ସେଭଳି କାର୍ଯ୍ୟକ୍ରମର ମୂଲ୍ୟାୟନ ପାଇଁ ସାହାଯ୍ୟ କରିବ । ଭାରତରେ ୩୪.୫ ଶତକଡ଼ା ଭିନ୍ନକ୍ଷମ କର୍ମୀ ହୋଇଥିଲା ବେଳେ ଓଡ଼ିଶାରେ ସେମାନଙ୍କ ଅନୁପାତ ୩୨.୪ ଶତକଡ଼ା ରହିଛି । ରାଜ୍ୟ ହାରଠୁ ଅଧିକ ଥିବା ଜିଲ୍ଲାଗୁଡ଼ିକ ହେଲା, ବରଗଡ଼ (୩୭.୦), ସମ୍ବଲପୁର (୩୮.୨), ଦେବଗଡ଼ (୪୨.୯), ସୁନ୍ଦରଗଡ଼ (୩୫.୦), ମୟୂରଭଞ୍ଜ (୩୫.୬), ଅନୁଗୁଳ (୩୫.୫), ଗଞ୍ଜାମ (୩୩.୨), ଗଜପତି (୪୩.୨), କନ୍ଧମାଳ (୩୯.୯), ବୌଦ୍ଧ (୩୭.୬), ସୋନପୁର (୩୭.୫), ନୂଆପଡ଼ା (୩୩.୯), କଳାହାଣ୍ଡି (୩୫.୯), ରାୟଗଡ଼ା (୪୨.୭), ନବରଙ୍ଗପୁର (୪୨.୧), କୋରାପୁଟ (୪୩.୦) ଏବଂ ମାଲକାନଗିରି (୪୪.୨) । ଏ ଜିଲ୍ଲାଗୁଡ଼ିକ ପ୍ରାୟତଃ ଆଦିବାସୀ ବହୁଳ ଏବଂ ଅପେକ୍ଷାକୃତ କମ୍ ଉନ୍ନତ । ତେଣୁ ଭିନ୍ନକ୍ଷମଙ୍କ ମଧ୍ୟରେ କର୍ମୀଙ୍କ ଅନୁପାତ ବେଶୀ ହେଲେ ମଧ୍ୟ ବୋଧହୁଏ କାର୍ଯ୍ୟଗୁଡ଼ିକ ଅଳ୍ପ ଆୟକାରୀ । ତେଣୁ ଅଧିକ ଆୟ ବିଶିଷ୍ଟ କର୍ମରେ ଭିନ୍ନକ୍ଷମଙ୍କ ଉପସ୍ଥିତି ବୋଧହୁଏ ଆଖିଦୃଶିଆ ନୁହେଁ । ଉପକୂଳ ଅଞ୍ଚଳରେ ତେଣୁ ସ୍ୱତନ୍ତ୍ର କାର୍ଯ୍ୟକ୍ରମର ଆବଶ୍ୟକତା ରହିଛି ନିଶ୍ଚୟ ।

### ଶେଷକଥା - ନିଜକୁ ଭିନ୍ନକ୍ଷମ ମନେକରି

ଭିନ୍ନକ୍ଷମଙ୍କ ଭିନ୍ନ ସ୍ୱର କ୍ଷୀଣ ରହିଲା ହୁଏତ ! ଜନଗଣନା ୨୦୦୧ ଦର୍ପଣରେ ନିଜକୁ ଦେଖିଲା ବେଳେ ଆମେ ଜାଣିଲୁ ଆମେ କେତେ ସବଳ, କେତେ ସକ୍ଷମ । ସ୍ୱର ସୁ-ସଂସ୍କୃତ ହେଲା,

ସୁଝଂକୃତ ହେଲା । ଆଶା ହେଲା ନିଜ ଅସ୍ତିତ୍ୱ ଜାହିର କରିବାକୁ । ଅନ୍ତଃ ଧ୍ୱନି ହେଲା ଆମେ ବି ତ ମଣିଷ, ଗଣାହେବାନି କାହିଁକି ଜନଗଣନାରେ । ଗଣନାଭୁକ୍ତ ହେବା ଆମ ଅଧିକାର । ଆମ ପରିବାରରେ ସମସ୍ତେ ତ ଆମକୁ ଭଲ ପାଆନ୍ତି ଗଣେଇବେ ନି କାହିଁକି ? ଏହି ଗଣନା ହିଁ ଆଣିଦେବ ସମ୍ଭାବ୍ୟ ପ୍ରଗତିର ଯୋଜନା । ଭିନ୍ନକ୍ଷମ ଭିନ୍ନ ହୋଇ ରହିବେନି, ଏକ ହୋଇଯିବେ ମୁଖ୍ୟ ସ୍ରୋତରେ । ସହାନୁଭୂତି ନୁହେଁ, ସହଯୋଗ ଆମର କାମ୍ୟ । ଜନଗଣନାକାରୀ ତ ଗାଁର, ସହରର ଆଦରର ମଣିଷ । ଆମ ଭିତରୁ ଅନେକଙ୍କୁ ଗଣିବାକୁ ସେମାନେ କରିଛନ୍ତି ଅନେକ ପରିଶ୍ରମ । ଆମକୁ ଖୋଜିବେନି, ଗଣିବେନି କାହିଁକି ? ଗଣିବେ ନିଶ୍ଚୟ । ଜନଗଣନା ୨୦୧୧, ଭିନ୍ନକ୍ଷମଙ୍କ ଜନଗଣନାର ବର୍ଷ ହେଉ ବିଶେଷ କରି । ଆମେ ସବୁ ଆପାତତଃ ଅଦୃଶ୍ୟ, ଦୃଶ୍ୟ ହେବୁ ଜନଗଣନା ଆଇନାରେ । ଆଗକୁ ହୁଏତ ବଦଳିଯିବ ଭିନ୍ନକ୍ଷମଙ୍କ ଚିତ୍ର, ଏଠି ସେଠି ସବୁଠି । ଜନଗଣଙ୍କ ଜନଗଣନାର ବାର୍ତ୍ତା 'ପ୍ରତ୍ୟେକ ମଣିଷ ଗୁରୁତ୍ୱପୂର୍ଣ୍ଣ ଏବଂ ଗଣା ହେବେ' ସଫଳକାମ ହେଉ । ଆଶା ୨୦୧୧ର ବିଶ୍ଳେଷଣ ଅଧିକ ଆଲୋକପାତ କରିବ ଭିନ୍ନକ୍ଷମଙ୍କ ସ୍ଥିତି ବିଷୟରେ ।

---



ସ୍କୁଲ ଛାତ୍ରଛାତ୍ରୀଙ୍କୁ ଜନଗଣନା-୨୦୧୧ ସମ୍ବନ୍ଧରେ ସଚେତନ କରାଇବା ପାଇଁ ପଥପ୍ରାନ୍ତ ନାଟକର ଏକ ଦୃଶ୍ୟ ।

## ମୋଟ ଜନସଂଖ୍ୟାରେ ଭିନ୍ନକ୍ଷମଙ୍କ ସଂଖ୍ୟା

| ଜିଲ୍ଲାର ନାମ | ମୋଟ ଭିନ୍ନକ୍ଷମଙ୍କ ସଂଖ୍ୟା | | | ମୋଟ ଜନସଂଖ୍ୟାରେ ଭିନ୍ନକ୍ଷମଙ୍କ ଶତକଡ଼ା ହାର | | |
|---|---|---|---|---|---|---|
| | ମୋଟ | ପୁରୁଷ | ସ୍ତ୍ରୀ | ମୋଟ | ପୁରୁଷ | ସ୍ତ୍ରୀ |
| ବରଗଡ଼ | 42135 | 23303 | 18832 | 3.13 | 3.42 | 2.83 |
| ଝାରସୁଗୁଡ଼ା | 15300 | 8293 | 7007 | 3.00 | 3.17 | 2.83 |
| ସମ୍ବଲପୁର | 28283 | 15567 | 12716 | 3.02 | 3.28 | 2.76 |
| ଦେବଗଡ଼ | 9892 | 5670 | 4222 | 3.61 | 4.10 | 3.11 |
| ସୁନ୍ଦରଗଡ଼ | 41465 | 22736 | 18729 | 2.27 | 2.43 | 2.09 |
| କେନ୍ଦୁଝର | 34728 | 19197 | 15531 | 2.22 | 2.43 | 2.01 |
| ମୟୂରଭଞ୍ଜ | 54661 | 29080 | 25581 | 2.46 | 2.59 | 2.33 |
| ବାଲେଶ୍ୱର | 53752 | 30885 | 22867 | 2.66 | 2.98 | 2.31 |
| ଭଦ୍ରକ | 44271 | 25427 | 18844 | 3.32 | 3.76 | 2.86 |
| କେନ୍ଦ୍ରାପଡ଼ା | 37408 | 21266 | 16142 | 2.87 | 3.29 | 2.46 |
| ଜଗତସିଂହପୁର | 27161 | 15701 | 11460 | 2.57 | 2.91 | 2.21 |
| କଟକ | 65567 | 37936 | 27631 | 2.80 | 3.14 | 2.44 |
| ଯାଜପୁର | 51730 | 30160 | 21570 | 3.18 | 3.66 | 2.69 |
| ଢେଙ୍କାନାଳ | 29188 | 16850 | 12338 | 2.74 | 3.10 | 2.36 |
| ଅନୁଗୁଳ | 29559 | 16854 | 12705 | 2.59 | 2.87 | 2.30 |
| ନୟାଗଡ଼ | 23799 | 13713 | 10086 | 2.75 | 3.07 | 2.41 |
| ଖୋର୍ଦ୍ଧା | 62526 | 36295 | 26231 | 3.33 | 3.68 | 2.95 |
| ପୁରୀ | 57083 | 31965 | 25118 | 3.80 | 4.19 | 3.40 |
| ଗଞ୍ଜାମ | 93197 | 50122 | 43075 | 2.95 | 3.17 | 2.73 |
| ଗଜପତି | 13489 | 6921 | 6568 | 2.60 | 2.71 | 2.49 |
| କନ୍ଧମାଳ | 18030 | 9956 | 8074 | 2.78 | 3.08 | 2.48 |
| ବୌଦ୍ଧ | 10086 | 5553 | 4533 | 2.70 | 2.95 | 2.45 |
| ସୋନପୁର | 13431 | 7604 | 5827 | 2.48 | 2.76 | 2.19 |
| ବଲାଙ୍ଗିର | 32006 | 17287 | 14719 | 2.39 | 2.56 | 2.22 |
| ନୂଆପଡ଼ା | 13696 | 7232 | 6464 | 2.58 | 2.74 | 2.43 |
| କଳାହାଣ୍ଡି | 32421 | 17450 | 14971 | 2.43 | 2.61 | 2.24 |
| ରାୟଗଡ଼ା | 20605 | 10520 | 10085 | 2.48 | 2.57 | 2.39 |
| ନବରଙ୍ଗପୁର | 28104 | 14966 | 13138 | 2.74 | 2.91 | 2.57 |
| କୋରାପୁଟ | 26625 | 14360 | 12265 | 2.26 | 2.43 | 2.08 |
| ମାଲକାନଗିରି | 11137 | 6045 | 5092 | 2.21 | 2.39 | 2.02 |
| ଓଡ଼ିଶା | 1021335 | 568914 | 452421 | 2.78 | 3.05 | 2.49 |

# ଜନଗଣନାରୁ ଓଡ଼ିଶାର ଜିଲ୍ଲାଗୁଡ଼ିକର ଶିଶୁ ମୃତ୍ୟୁହାର

ଜନଗଣନାରେ ୧୯୮୧ ମସିହାରୁ ପ୍ରଜନନ ସମ୍ବନ୍ଧୀୟ ବିବରଣୀ ମଧ୍ୟରେ ଜନ୍ମିତ ପିଲା ଏବଂ ଜୀବିତ ଥିବା ପିଲାଙ୍କ ସଂଖ୍ୟା 'କେବେବି ବିବାହିତ' ମହିଳାଙ୍କୁ ପଚାରି ତଥ୍ୟ ସଂଗ୍ରହ କରାଯାଉଛି । ଏହି ତଥ୍ୟର ଉପଯୋଗ କରି ଜନସଂଖ୍ୟାବିତ୍‌ଙ୍କ ଦ୍ୱାରା ଦିଆଯାଇଥିବା ପରୋକ୍ଷ ପ୍ରଣାଳୀ ସାହାଯ୍ୟରେ ଜିଲ୍ଲାସ୍ତରରେ 'ଶିଶୁ ମୃତ୍ୟୁହାର'ର ଅଟକଳ ଜନଗଣନା କମିଶନରଙ୍କ ଦ୍ୱାରା ପ୍ରକାଶିତ ହୋଇଅଛି । ବର୍ତ୍ତମାନ ପର୍ଯ୍ୟନ୍ତ ଏହା ହିଁ ଏକମାତ୍ର ଗ୍ରହଣ କଲାଭଳି ହାର ଜିଲ୍ଲାସ୍ତର ପାଇଁ । ଅନେକ ସମୟରେ ଏ ସମ୍ବନ୍ଧରେ ଅବଗତ ନଥିବାରୁ ରେଜିଷ୍ଟ୍ରିଭୁକ୍ତ ତଥ୍ୟରେ ଆଧାରିତ ହାରକୁ ଜିଲ୍ଲାସ୍ତରର ହାର ଭାବେ କେହି କେହି ବ୍ୟବହାର କରିଥାନ୍ତି । ରେଜିଷ୍ଟ୍ରେସନ ସମ୍ପୂର୍ଣ୍ଣ ହୋଇନଥିବାରୁ ଏଭଳି ହାରରୁ ଆକଳନ ବିପଦଜନକ କୌଣସି ଯୋଜନା ପାଇଁ । ତେବେ ଜନଗଣନାରୁ ଅଟକଳ ମଧ୍ୟ ତା' ପୂର୍ବ ୫ବର୍ଷର ହାରାହାରି ସ୍ଥିତିର ସୂଚନା ଦିଏ । ଏଣୁ ୧୯୮୧, ୧୯୯୧ ଏବଂ ୨୦୦୧ର ଜନଗଣନାରୁ ଅଟକଳ କରାଯାଇଥିବା ଶିଶୁ ମୃତ୍ୟୁହାର ୧୯୭୬-୮୦, ୧୯୮୬-୯୦ ଏବଂ ୧୯୯୬-୨୦୦୦ ସମୟକାଳ ସହିତ ସମ୍ପର୍କିତ । ରେଜିଷ୍ଟ୍ରର ଜେନରାଲଙ୍କ ଦ୍ୱାରା ପ୍ରକାଶିତ ନମୁନା ରେଜିଷ୍ଟ୍ରେସନ୍ ଯୋଜନାରୁ ମିଳୁଥିବା ତଥ୍ୟ ରାଜ୍ୟ ଏବଂ ତା'ର ଗ୍ରାମ ବା ସହରାଞ୍ଚଳ ଭେଦରେ, ପ୍ରାୟତଃ ବ୍ୟବହୃତ ହୋଇ ଶିଶୁ ମୃତ୍ୟୁ ରୋକିବା ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଏ । ତା'ର ତୁଳନାତ୍ମକ ଅଧ୍ୟୟନ କରି, ଜିଲ୍ଲା ସ୍ତରର ଜନଗଣନାରୁ ମିଳିଥିବା ତଥ୍ୟର ମୂଲ୍ୟାଙ୍କନ ବିଧେୟ । ତେବେ ବିଶେଷ ଗହୀରକୁ ଯିବାକୁ ଶଂସିତ ଆଲୋଚନା ସୁଯୋଗ ଦିଏ ନାହିଁ କାରଣ ଏହା ପାଠକକୁ ଭାରାକ୍ରାନ୍ତ କରିବ ବୈଷୟିକ ଦିଗରେ ଅନାବଶ୍ୟକ ଭାବେ ଟାଣିନେଇ । ତେଣୁ ସେଭଳି ପ୍ରଚେଷ୍ଟାରୁ ନିବୃତ ରହି ଜନସାଧାରଣଙ୍କ ବୋଧଗମ୍ୟ ହେଲାଭଳି ଜନଗଣନାର ତଥ୍ୟକୁ କେବଳ ଆଧାର କରି ଶିଶୁମୃତ୍ୟୁ ସମ୍ପର୍କରେ ଓଡିଶାର ସ୍ଥିତିର କିଛିଟା ସୂଚନା ଦେବା ଏଠାରେ ପ୍ରୟାସ । ଆଗରୁ କୁହାଯାଇଥିବା ନମୁନା ରେଜିଷ୍ଟ୍ରେସନ ଯୋଜନାର ତଥ୍ୟ ଆଧାରରେ ଜଣାପଡେ, ଓଡିଶାର ଶିଶୁ ମୃତ୍ୟୁହାର ଜାତୀୟସ୍ତରରୁ ସବୁବେଳେ ବେଶୀ । ଓଡିଶାର ଶିଶୁ ମୃତ୍ୟୁ ବିଭିନ୍ନ ରାଜ୍ୟ ତୁଳନାରେ ଅଧିକ ହୋଇଥିବାରୁ, ଏହା ଦୃଷ୍ଟି ଆକର୍ଷଣ କରେ । ଓଡିଶା ଭିତରେ ମଧ୍ୟ କେତେ ଅଞ୍ଚଳର ଶିଶୁ ମୃତ୍ୟୁ ଅତ୍ୟଧିକ । ତେବେ ସେହି ସୂତ୍ରରୁ ଜଣାପଡେ ୧୯୭୦ ଦଶକରେ ଓଡିଶାର ଶିଶୁ ମୃତ୍ୟୁହାର ପ୍ରାୟତଃ ସମାନ ସ୍ତରରେ ରହିଥିଲା ଏବଂ ୧୯୮୦ ଦଶକରେ ଏହା ୧୩୦ ପାଖାପାଖି କିଛି ତଳ ଉପର ହୋଇ କମିବାକୁ ଆରମ୍ଭ କଲା । ୧୯୭୦ ଦଶକରେ ଓଡିଶାର ଶିଶୁ ମୃତ୍ୟୁ ଭାରତ ସହ ସମାନ ଥିଲାବେଳେ ୧୯୮୦ଦଶକରେ ହାରରେ ବ୍ୟବଧାନ ଆରମ୍ଭ ହେଲା । ଏହି ଆଧାରରୁ ମିଳୁଥିବା ତଥ୍ୟ ତୁଳନାରେ ୧୯୮୧ ଏବଂ ୧୯୯୧ରେ ଅଧିକ ଥିଲାବେଳେ ୨୦୦୧ରେ ଏହା କମ୍ ରହିଛି । ତେଣୁ ପ୍ରବନ୍ଧରେ କେବଳ ଆପେକ୍ଷିକ ସ୍ଥିତି ବିଷୟରେ କିଛି ଆଲୋକପାତ କରାଯିବ ।

ଜନଗଣନାର ତଥ୍ୟ ଅନୁସାରେ ଓଡିଶାରେ ଶିଶୁ ମୃତ୍ୟୁହାର ଥିବା ୭୬-୮୦ରେ ୧୬୩, ୮୬-୯୦ରେ ୧୨୫ ଏବଂ ୧୯୯୬-୨୦୦୦ରେ ୮୨ । ଏଥିରୁ ଜଣାପଡେ ଶିଶୁ ମୃତ୍ୟୁହାର କ୍ରମଶଃ କମିବାରେ ଲାଗିଛି । ଜିଲ୍ଲାଓ୍ୱାରୀ ଅଟକଳରୁ ଜଣାପଡେ, ସର୍ବୋଚ୍ଚ ଶିଶୁ ମୃତ୍ୟୁ ହାର ଥିବା ଜିଲ୍ଲାଗୁଡିକ ହେଲା, ଅବିଭକ୍ତ ଫୁଲବାଣୀ (୨୦୦) ଓ କଟକ (୧୯୭) ଜିଲ୍ଲା । ୧୯୮୧ ଜନଗଣନାରେ ଅବିଭକ୍ତ ପୁରୀ (୧୫୧) ଏବଂ କଳାହାଣ୍ଡି (୧୩୭), ୧୯୯୧ରେ ଅବିଭକ୍ତ ଫୁଲବାଣୀ (୧୦୪) ଓ କୋରାପୁଟ (୯୬) ୨୦୦୧ ମସିହା ପାଖାପାଖି ନୂତନ ଜିଲ୍ଲାମାନଙ୍କ ତଥ୍ୟ ମିଳେ ୨୦୦୧ ଜନଗଣନାରୁ । ତଦନୁଯାୟୀ କନ୍ଧମାଳ (୧୧୨) ଏବଂ ଗଜପତି (୧୦୪) ସର୍ବୋଚ୍ଚ । ସେହିଭଳି ସର୍ବନିମ୍ନ ହାର ଓଡିଶାର ଜିଲ୍ଲାମାନଙ୍କ ମଧ୍ୟରେ ଦେଖାଯାଏ, ୧୯୮୧ରେ ସୁନ୍ଦରଗଡ (୧୨୧) ଓ

ମୟୂରଭଞ୍ଜ (୧୦୫), ୧୯୯୧ରେ କେନ୍ଦୁଝର (୯୯) ଓ ମୟୂରଭଞ୍ଜ (୯୧) ଏବଂ ଅବିଭକ୍ତ ସମ୍ବଲପୁର (୭୨) ଓ ମୟୂରଭଞ୍ଜ (୬୧) ୨୦୦୧ ମସିହାରେ । ନୂତନ ଜିଲ୍ଲାମାନଙ୍କ ମଧ୍ୟରେ ୨୦୦୧ରେ ଝାରସୁଗୁଡ଼ା (୬୧) ଏବଂ ମୟୂରଭଞ୍ଜ (୬୧) ଶିଶୁ ମୃତ୍ୟୁହାର ଦୃଷ୍ଟିରୁ ୨୦୦୧ ମସିହାରେ ସବୁଠୁ କମ୍ ଥିବା ଅଟକଳ କରାଯାଇଛି । ଜିଲ୍ଲାଗୁଡ଼ିକର କ୍ରମ ପ୍ରତ୍ୟେକ ଜନଗଣନାରେ ବଦଳିଛି ଶିଶୁ ମୃତ୍ୟୁର ବିଭିନ୍ନ ଜନଗଣନାର ଆକଳିତ ହାର ଅନୁସାରେ, ଯଦିଓ ୩ଟି ଯାକ ଅଟକଳରେ ମୟୂରଭଞ୍ଜ ଜିଲ୍ଲାରେ ଶିଶୁ ମୃତ୍ୟୁହାର ସବୁଠୁ କମ୍ । ସୁନ୍ଦରଗଡ ଏବଂ ସମ୍ବଲପୁର ଜିଲ୍ଲାରେ ମଧ୍ୟ ଆପେକ୍ଷିକ ଭାବେ ଶିଶୁ ମୃତ୍ୟୁହାର କମ୍ ଥିବା ଜଣାପଡେ ।

ଶିଶୁ ମୃତ୍ୟୁହାର କମିବାକୁ ଶତକଡା ଭାବରେ ଆକଳନ କଲେ ଜଣାପଡେ ଯେ ୧୯୮୧-୨୦୦୧ ମଧ୍ୟରେ ଜିଲ୍ଲାଗୁଡ଼ିକରୁ ବାଲେଶ୍ୱର (୫୮.୪), କଟକ (୫୯.୪) ପୁରୀ (୫୨.୯), ଢେଙ୍କାନାଳ (୫୫.୧), ବଲାଙ୍ଗିର (୫୯.୦) ଏବଂ କେନ୍ଦୁଝର (୫୬.୧) କ୍ଷେତ୍ରରେ ଶତକଡା ୫୦ ଭାଗରୁ ଅଧିକ । କୋରାପୁଟ ଜିଲ୍ଲା କ୍ଷେତ୍ରରେ ଏହା ଶତକଡା (୨୭.୮) ଭାଗ ଯାହାକି ସର୍ବନିମ୍ନ ସ୍ତରର କମିବ । ଏ ତଥ୍ୟ ଅବିଭକ୍ତ ଜିଲ୍ଲାଗୁଡ଼ିକ ପାଇଁ ଆକଳିତ । ସଂପୂର୍ଣ୍ଣ ଓଡ଼ିଶା ପାଇଁ କମିବାର ସ୍ତର ଶତକଡା ୪୯.୭ ଭାଗ ।

ଉପରୋକ୍ତ ବିଶ୍ଳେଷଣରୁ ଜଣାପଡେ ଓଡ଼ିଶାର ଜିଲ୍ଲାଗୁଡ଼ିକ ଶିଶୁ ମୃତ୍ୟୁହାର ଦୃଷ୍ଟିରୁ ଭିନ୍ନତାର ପ୍ରତିପାଦନ କରନ୍ତି । ଏହା କମୁଥିଲେ ମଧ୍ୟ ଏବେ ବି ଚିନ୍ତାଜନକ ସ୍ଥିତିକୁ ସୂଚାଉଛି । ଗବେଷକ ମତ ଅନୁସାରେ ସ୍ତ୍ରୀ ଶିକ୍ଷା ଶିଶୁ ମୃତ୍ୟୁହାର କମାଇବାରେ ଯଥେଷ୍ଟ ଭୂମିକା ରହିଛି । ତା' ସାଙ୍ଗକୁ ମା' ଓ ଶିଶୁମାନଙ୍କ ପାଇଁ କରାଯାଉଥିବା କାର୍ଯ୍ୟକ୍ରମରେ ମଧ୍ୟ ଗୁରୁତ୍ୱ ରହିଛି । ନାରୀ ଶକ୍ତିକରଣ କାର୍ଯ୍ୟକ୍ରମଗୁଡ଼ିକ ସଘନ ଏବଂ ତ୍ୱରାନ୍ୱିତ କଲେ ଶିଶୁ ମୃତ୍ୟୁହାର କମିବାର ସମ୍ଭାବନା ସମ୍ପର୍କରେ ଯଥେଷ୍ଟ ତଥ୍ୟ ବିଭିନ୍ନ ଗବେଷଣାରୁ ମିଳେ । ତେବେ ୨୦୧୧ ଜନଗଣନା କି ଚିତ୍ର ପ୍ରଦାନ କରିବ, ଦେଖିବାକୁ ଅପେକ୍ଷା ରହିଲା ।

(ବିଶେଷ ଦ୍ରଷ୍ଟବ୍ୟ: ଏ ପ୍ରବନ୍ଧ ପି.ଏମ୍. କୁଲକର୍ଣ୍ଣି ଏବଂ ହରିହର ସାହୁଙ୍କ ଦ୍ୱାରା ପ୍ରସ୍ତୁତ ଏବଂ ନିକଟରେ ଏକ ସେମିନାରରେ ପଢ଼ା ଯାଇଥିବା ଗବେଷଣା ପତ୍ରର ଆଧାରରେ ପ୍ରସ୍ତୁତ କରାଯାଇଛି ।)




Source: India, Registrar General (2009c)


ଓଡ଼ିଶା ଏବଂ ଭାରତର ଶିଶୁ ମୃତ୍ୟୁହାରର ଧାରା, ଏସ୍.ଆର୍.ଏସ୍, ୧୯୭୧-୨୦୦୮
ଶିଶୁ ମୃତ୍ୟୁହାର
୨୦୦
୧୮୦
୧୬୦
୧୪୦
୧୨୦
୧୦୦
୮୦
୬୦
୪୦
୨୦
୦
୧୯୭୧
୧୯୭୩
୧୯୭୫
୧୯୭୭
୧୯୭୯
୧୯୮୧
୧୯୮୩
୧୯୮୫
୧୯୮୭
୧୯୮୯
୧୯୯୧
୧୯୯୩
୧୯୯୫
୧୯୯୭
୧୯୯୯
୨୦୦୧
୨୦୦୩
୨୦୦୫
୨୦୦୭
ବର୍ଷ
ଓଡ଼ିଶା
ଭାରତ

## ଜନଗଣନା ତଥ୍ୟ ଭିତ୍ତିରେ ଓଡ଼ିଶାର ବିଭିନ୍ନ ଜିଲ୍ଲାର ନିକଟ ଦଶନ୍ଧିଗୁଡ଼ିକରେ ଶିଶୁ ମୃତ୍ୟୁହାରର ପରୋକ୍ଷ ଆକଳନ

| ଅଞ୍ଚଳ/ଜିଲ୍ଲା | ୧୯୮୧[୧] | ୧୯୯୧[୧] | ୨୦୦୧[୨] | ସଂଶୋଧିତ ଶିଶୁ ମୃତ୍ୟୁହାର ୨୦୦୧[୩] | ଶତକଡ଼ା ହ୍ରାସ ୧୯୮୧-୧୯୯୧ | ୧୯୯୧-୨୦୦୧ | ୧୯୮୧-୨୦୦୧[୪] |
|---|---|---|---|---|---|---|---|
| *ଉପକୂଳବର୍ତ୍ତୀ* | | | | | | | |
| ବାଲେଶ୍ୱର | ୧୯୦ | ୧୨୩ | ୭୭ | ୭୯ | ୩୫.୩ | ୩୭.୪ | ୫୮.୪ |
| ଭଦ୍ରକ | – | – | ୮୩ | – | – | – | – |
| କଟକ | ୧୯୭ | ୧୧୨ | ୮୨ | ୮୦ | ୪୩.୧ | ୨୬.୮ | ୫୯.୪ |
| ଜଗତସିଂହପୁର | – | – | ୭୬ | – | – | – | – |
| ଯାଜପୁର | – | – | ୭୭ | – | – | – | – |
| କେନ୍ଦ୍ରାପଡ଼ା | – | – | ୮୫ | – | – | – | – |
| ପୁରୀ | ୧୭୦ | ୧୫୧ | ୮୫ | ୮୦ | ୧୧.୨ | ୪୩.୭ | ୫୨.୯ |
| ଖୋର୍ଦ୍ଧା | – | – | ୭୩ | – | – | – | – |
| ନୟାଗଡ଼ | – | – | ୮୫ | – | – | – | – |
| ଗଞ୍ଜାମ | ୧୫୨ | ୧୩୩ | ୮୨ | ୮୫ | ୧୨.୫ | ୩୮.୩ | ୪୪.୧ |
| ଗଜପତି | – | – | ୧୦୪ | – | – | – | – |
| ***ଉତ୍ତରାଞ୍ଚଳ*** | | | | | | | |
| ଢେଙ୍କାନାଳ | ୧୭୬ | ୧୦୫ | ୮୩ | ୭୯ | ୪୦.୩ | ୨୧.୦ | ୫୫.୧ |
| ଅନୁଗୁଳ | – | – | ୭୬ | – | – | – | – |
| ବଲାଙ୍ଗୀର | ୧୮୩ | ୧୦୧ | ୭୬ | ୭୫ | ୪୪.୮ | ୨୪.୮ | ୫୯.୦ |
| ସୋନପୁର | – | – | ୭୧ | – | – | – | – |
| ସମ୍ବଲପୁର | ୧୨୨ | ୧୦୩ | ୭୭ | ୭୨ | ୧୫.୬ | ୨୫.୨ | ୪୧.୦ |
| ବରଗଡ଼ | – | – | ୬୯ | – | – | – | – |
| ଦେବଗଡ଼ | – | – | ୯୩ | – | – | – | – |
| ଝାରସୁଗୁଡ଼ା | – | – | ୬୧ | – | – | – | – |
| କେନ୍ଦୁଝର | ୧୮୭ | ୯୯ | ୮୨ | ୮୨ | ୪୭.୧ | ୧୭.୨ | ୫୬.୧ |
| ମୟୂରଭଞ୍ଜ | ୧୦୫ | ୯୧ | ୬୧ | ୬୧ | ୧୩.୩ | ୩୩.୦ | ୪୧.୯ |
| ସୁନ୍ଦରଗଡ଼ | ୧୨୧ | ୧୦୧ | ୭୩ | ୭୩ | ୧୬.୫ | ୨୭.୭ | ୩୯.୭ |
| ***ଦକ୍ଷିଣାଞ୍ଚଳ*** | | | | | | | |
| ଫୁଲବାଣୀ/କନ୍ଧମାଳ | ୨୦୦ | ୧୧୯ | ୧୧୨ | ୧୦୪ | ୪୦.୫ | ୫.୯ | ୪୮.୦ |
| ବୌଦ୍ଧ | – | – | ୯୦ | – | – | – | – |
| କଳାହାଣ୍ଡି | ୧୬୯ | ୧୩୭ | ୯୭ | ୯୪ | ୧୮.୯ | ୨୯.୨ | ୪୪.୪ |
| ନୂଆପଡ଼ା | – | – | ୮୬ | – | – | – | – |
| କୋରାପୁଟ | ୧୩୩ | ୧୧୮ | ୯୫ | ୯୬ | ୧୧.୩ | ୧୯.୫ | ୨୭.୮ |
| ମାଲକାନଗିରି | – | – | ୯୫ | – | – | – | – |
| ନବରଙ୍ଗପୁର | – | – | ୯୬ | – | – | – | – |
| ରାୟଗଡ଼ା | – | – | ୯୯ | – | – | – | – |
| **ଓଡ଼ିଶା** | **୧୬୩** | **୧୨୫** | **୮୨** | **୮୨** | **୨୩.୩** | **୩୪.୪** | **୪୯.୭** |

# ଜନଗଣନାରୁ 'ବିବାହ ବୟସ' ସମ୍ବନ୍ଧରେ ଓଡ଼ିଶାର ସ୍ଥିତି

ବିବାହ ସମାଜର ଏକ ମୁଖ୍ୟ ଅନୁଷ୍ଠାନ ଭାବେ ଆବହମାନ କାଳରୁ ସ୍ୱୀକୃତ । ଭାରତୀୟ ସଂସ୍କୃତିରେ ବିବାହର ପ୍ରାଧାନ୍ୟ, ପ୍ରତ୍ୟେକ ଧର୍ମାନୁଷ୍ଠାନ କର୍ମରେ ତଥା ସ୍ତ୍ରୀ ପୁରୁଷଙ୍କ ମିଳନର ପ୍ରଥମ ସୂତ୍ରପାତ ଭାବରେ ରହିଛି । ଜାତିସଂଘର ସଞ୍ଜ୍ଞା ଅନୁସାରେ, ବିବାହ ଏଭଳି ଏକ କାର୍ଯ୍ୟ, ଅନୁଷ୍ଠାନ ବା ପ୍ରଣାଳୀ ଯାହା ସ୍ୱାମୀ ଏବଂ ସ୍ତ୍ରୀର ଆଇନ ସ୍ୱୀକୃତ ସମ୍ପର୍କ ଗଠନ କରେ । ଏହି ସମ୍ପର୍କର ଆଇନଗତ ସ୍ୱୀକୃତି, ଦେବାନୀ ଆଇନ, ଧାର୍ମିକ କିମ୍ବା ଅନ୍ୟାନ୍ୟ ପ୍ରଣାଳୀ ଯାହାକି ପ୍ରତ୍ୟେକ ଦେଶର ଆଇନ ଦ୍ୱାରା ସ୍ୱୀକୃତ ଉପରେ ନିର୍ଭର କରେ । ବିବାହ ବନ୍ଧନ ସ୍ତ୍ରୀ-ପୁରୁଷଙ୍କୁ ନୂତନ ଅଧିକାର ଏବଂ ଦାୟିତ୍ୱ ଦିଗରେ ସଚେତନ କରେ ଏବଂ ଏହା ସାଧାରଣତଃ ପ୍ରଜନନ କରି ପରିବାରର ମୂଳଦୁଆ ପକେଇବା ପାଇଁ ସମାଜର ସ୍ୱୀକୃତି ଦିଏ । ଭାରତରେ ବିବାହର ସାର୍ବଜନୀନତା ଏବଂ ବାଲ୍ୟ ବିବାହ ଏଠାରେ ଅଧିକ ପ୍ରଜନନର କାରଣ (ମୁଖ୍ୟତଃ) ବୋଲି ଆଲୋଚନା କରାଯାଏ । ଏହି ଜନସାଂଖ୍ୟକ ବର୍ଣ୍ଣନା ଉପରେ ଆଧାର କରି ୧୯୭୧ରୁ ଜନଗଣନା ସମୟରେ 'ବିବାହିତ' ସ୍ଥିତିରେ ଥିବା ସ୍ତ୍ରୀମାନଙ୍କ ବୟସ ସମ୍ପର୍କରେ ତଥ୍ୟ ସଂଗ୍ରହ କରାଯାଇଥିଲା । ୧୯୮୧ ଏବଂ ୧୯୯୧ ଜନଗଣନାରେ 'କେବେ ବି ବିବାହ କରିଥିବା' ପ୍ରତ୍ୟେକ ସ୍ତ୍ରୀଙ୍କୁ ଏ ପ୍ରଶ୍ନ ପଚରା ଯାଇଥିଲା । ୨୦୦୧ ଜନଗଣନାରେ ସେହି ସ୍ତ୍ରୀମାନଙ୍କ ସହିତ 'କେବେ ବି ବିବାହ କରିଥିବା' ପ୍ରତ୍ୟେକ ପୁରୁଷ ପାଇଁ ମଧ୍ୟ ତଥ୍ୟ ସଂଗ୍ରହ କରାଯାଇଥିଲା । ପୂର୍ବ ଜନଗଣନାଗୁଡିକରେ ଏହି ପରିସଂଖ୍ୟାନ କିଛି ନମୁନା ଆଧାରରେ ଦିଆଯାଉଥିଲାବେଳେ, ୨୦୦୧ ମସିହାରେ ଶତକଡା ଶହେ ଆଧାରରେ ଗ୍ରାମାଞ୍ଚଳ, ସହରାଞ୍ଚଳ ଏବଂ ପ୍ରତ୍ୟେକ ରାଜ୍ୟର ଜିଲ୍ଲାଗୁଡିକ ପାଇଁ ଦିଆଯାଇଛି । ସେହି ତଥ୍ୟ ଆଧାରରେ ହାରାହାରି ବିବାହ ବୟସ ଆକଳିତ ହୋଇଥିବା ତଥ୍ୟ ପ୍ରବନ୍ଧରେ ସନ୍ନିବେଶିତ । ଏହି ତଥ୍ୟ କେତେକ ଦୃଷ୍ଟିରୁ ସୀମାବଦ୍ଧ ହୋଇଥିଲେ ମଧ୍ୟ ଜିଲ୍ଲା ପର୍ଯ୍ୟନ୍ତ ଏହା ମିଳୁଥିବାରୁ ଗୁରୁତ୍ୱପୂର୍ଣ୍ଣ । ୨୦୧୧ରେ ପ୍ରଶ୍ନଗୁଡିକର ପୁନଃ ସଂଯୋଗ ଅଧିକ ବିଶ୍ଳେଷଣର ସୁଯୋଗ ଦେବ ।

**ଭାରତ ଓ ଓଡିଶା**

ବାଲ୍ୟବିବାହ ପ୍ରଥାର କୁପରିଣାମ ସମ୍ପର୍କରେ ସଚେତନ ହୋଇ ଭାରତରେ ବଲ୍ୟବିବାହ ନିରୋଧ (ଶାରଦା ଆଇନ ଭାବେ ବେଶୀ ଜଣା) ଆଇନ୍ ୧୯୨୯ ମହିହାରେ ପ୍ରଣୟନ ହୋଇଥିଲା । ପରବର୍ତ୍ତୀ କାଳରେ କମ୍ ବିବାହ ବୟସର ଜନସାଂଖ୍ୟିକ ପରିଣାମଗୁଡିକୁ ଆଖି ଆଗରେ ରଖି ଏ ଆଇନ୍‌ର ସଂଶୋଧନ କରାଯାଇ, ଆଇନ୍ ସ୍ୱୀକୃତ ବିବାହ ବୟସ ପୁରୁଷମାନଙ୍କ ପାଇଁ ୨୧ ଏବଂ ସ୍ତ୍ରୀମାନଙ୍କ ପାଇଁ ୧୮ବର୍ଷ ଧାର୍ଯ୍ୟ ହୋଇଥିଲା । ୨୦୦୧ ମସିହା ଜନଗଣନାର ଆକଳନ ଅନୁସାରେ 'କେବେ ବି ବିହାହିତ' ସ୍ତ୍ରୀମାନଙ୍କ ମଧ୍ୟରୁ ଭାରତରେ ଶତକଡା ୨.୫ ଭାଗ ସ୍ତ୍ରୀ, ୧୮ବର୍ଷରୁ କମ୍ ଏବଂ ଶତକଡା ୨.୭ ଭାଗ ପୁରୁଷ ୨୧ବର୍ଷରୁ କମ୍ ବୋଲି ଜଣାପଡେ । ତା' ତୁଳନାରେ ଓଡିଶାର ହାର ଯଥାକ୍ରମେ ୧.୪ ଏବଂ ୧.୨ ଭାବେ ଆକଳିତ । 'ବର୍ତ୍ତମାନ ବିବାହିତ' ସ୍ଥିତିରେ ସ୍ତ୍ରୀଙ୍କର ଶତକଡା ଭାଗକୁ ବିଚାରକୁ ନେଲେ ୧୮ବର୍ଷରୁ କମ୍ ବୟସରେ ବିବାହ କରିଥିବା ସ୍ତ୍ରୀଙ୍କ ଅନୁପାତ ଭାରତ ପାଇଁ ୧୯୭୧ରୁ୨୦୦୧ ଚାରୋଟି ଜନଗଣନାରେ ଯଥାକ୍ରମେ- ୭୭.୪, ୬୭.୭, ୫୦.୪ ଏବଂ ୪୪.୭ । ସେହିପରି ଏହା ଓଡିଶା ପାଇଁ ହେଲା ୭୩.୫, ୬୭.୧, ୫୦.୧ ଏବଂ ୩୯.୦ ।

ଉପରୋକ୍ତ ତଥ୍ୟରୁ ଜଣାପଡେ ଜନସାଂଖ୍ୟିକ ପ୍ରଭାବ ଦୃଷ୍ଟିରୁ ବିବାହ ବୟସର ଗୁରୁତ୍ୱ ଓଡିଶାରେ ଭାରତ ତୁଳନାରେ ବେଶୀ । ବିଭିନ୍ନ ଜନଗଣନାରେ ୧୮ବର୍ଷରୁ କମ୍ ବୟସରରେ ବିବାହ କରୁଥିବା ସ୍ତ୍ରୀ ସଂଖ୍ୟା କମୁ ଥିବାରୁ ତା'ର ପ୍ରଭାବ ପ୍ରଜନନ ହାର ହ୍ରାସ କ୍ଷେତ୍ରରେ ଦୃଷ୍ଟ ହୁଏ । ସ୍ତ୍ରୀମାନଙ୍କର ହାରାହାରି ବିବାହ ବୟସ କ୍ରମକୁ ବିଚାରକୁ ନେଲେ ନଜଗଣନା

କ୍ରମରେ ଏହି ସ୍ଥିତି ଅଧିକ ସ୍ପଷ୍ଟ ହୁଏ । ଏ କ୍ଷେତ୍ରରେ ଭାରତରେ ୧୯୮୧ରୁ ୨୦୦୧ ଜନଗଣନାରେ ହାରାହାରି ବୟସ ଥିଲା, ଯଥାକ୍ରମେ ୧୬.୭, ୧୭.୭, ଏବଂ ୧୮.୩ । ସେହିଭଳି ଏହା ଓଡିଶା ପାଇଁ ଯଥାକ୍ରମେ ୧୭.୨, ୧୮.୦ ଓ ୧୮.୯ । ସବୁସମୟରେ ଓଡିଶାର ହାର ଭାରତ ତୁଳନାରେ ଅଧିକ ଓ ଏହା ଉଭୟରେ ବଢିଛି । ହାରାହାରି ବିବାହ ବୟସ କ୍ରମଶଃ ବୃଦ୍ଧି ଉଭୟ ଗ୍ରାମାଞ୍ଚଳ ଏବଂ ସହରାଞ୍ଚଳରେ ପରିଦୃଷ୍ଟ ହୁଏ ଯଦିଓ ଉଭୟ ସ୍ତରରେ ପାର୍ଥକ୍ୟ ରହିଛି । କେବଳ ୨୦୦୧ ଜନଗଣନାର ତଥ୍ୟ ଏ ଦିଗରେ ଅଧିକ ଆଲୋକପାତ କରିବ । ୨୦୦୧ ଜନଗଣନାରେ ଭାରତରେ ଗ୍ରାମାଞ୍ଚଳରେ ହାରାହାରି ବିବାହ ବୟସ ସ୍ତ୍ରୀଙ୍କ ପାଇଁ ୧୭.୯ ଥିଲାବେଳେ ସହରାଞ୍ଚଳରେ ଏହା ୧୯.୪ ବର୍ଷ । ସେହିଭଳି ପୁରୁଷଙ୍କ କ୍ଷେତ୍ରରେ ଏହା ଯଥାକ୍ରମେ ୨୧.୯ ଓ ୨୪.୨ ଥିଲାବେଳେ ସମସ୍ତ ପୁରୁଷଙ୍କ ପାଇଁ ଏହା ୨୨.୬ । ତୁଳନାତ୍ମକ ଭାବେ ଓଡିଶା କଥାକୁ ବିଚାରକୁ ନେଲେ ହାରାହାରି ବିବାହ ବୟସ ସ୍ତ୍ରୀଙ୍କ ପାଇଁ ଗ୍ରାମାଞ୍ଚଳରେ ୧୮.୮ ଏବଂ ସହରାଞ୍ଚଳରେ ୧୯.୬ ସେଭଳି ପୁରୁଷଙ୍କ କ୍ଷେତ୍ରରେ ଗ୍ରାମାଞ୍ଚଳର ହାର ୨୩.୬ ହେଲାବଳେ ସହରାଞ୍ଚଳରେ ଏହା ୨୫.୩ ଏବଂ ସମଗ୍ର ଓଡିଶାରେ ୨୩.୯ । ଉଭୟ ଓଡିଶା ଓ ଭାରତ କ୍ଷେତ୍ରରେ ସହରାଞ୍ଚଳରେ ହାରାହାରି ବିବାହ ବୟସ ଗ୍ରାମାଞ୍ଚଳ ତୁଳନାରେ ଅଧିକ । ସ୍ତ୍ରୀ ଓ ପୁରୁଷଙ୍କ ହାରାହାରି ବିବାହ ବୟସରେ ପାର୍ଥକ୍ୟ ହେଲା ଭାରତରେ ୪.୩ ଥିଲାବଳେ ଓଡିଶାରେ ଏହା ୫.୦ । ଉଭୟ ଗ୍ରାମାଞ୍ଚଳ ଓ ସହରାଞ୍ଚଳ ଭାରତ ତୁଳନାରେ ଓଡଶାରେ ଏହି ପାର୍ଥକ୍ୟ ପ୍ରାୟ ଏକ ବର୍ଷରୁ ଅଧିକ । ବିବାହର ହାରାହାରି ବୟସ ଜନଗଣନାରେ ବର୍ତ୍ତମାନ ବିବାହିତ ବ୍ୟକ୍ତିଙ୍କ ପାଇଁ ଦିଆଯାଇଛି ।

### ଜିଲ୍ଲାଗୁଡିକରେ ହାରାହାରି ବିବାହ ବୟସ

୨୦୦୧ ଜନଗଣନାରେ ସଂଗୃହୀତ ତଥ୍ୟରୁ ଆହରିତ ହାରାହାରି ବିବାହ ବୟସ ଉଭୟ ସ୍ତ୍ରୀ ଏବଂ ପୁରୁଷଙ୍କ ପାଇଁ ଗ୍ରାମାଞ୍ଚଳ ଓ ସହରାଞ୍ଚଳ ପାଇଁ ଓଡିଶାର ୩୦ଟି ଜିଲ୍ଲା ପାଇଁ ଉପଲବ୍ଧ । ଭାରତର ସବୁ ଜିଲ୍ଲା ସହିତ ବର୍ତ୍ତମାନ ବିବାହିତ ସ୍ତ୍ରୀଙ୍କ ହାରାହାରି ବିବାହ ବୟସ ଓଡିଶାରେ ୧୭ଟି ଜିଲ୍ଲାରେ ୧୮ରୁ ୧୮.୯ ହୋଇଥିଲାବେଳେ ଆଉ ୧୩ଟି ଜିଲ୍ଲା ପାଇଁ ୧୯ରୁ ୧୯.୯ ରହିଥିଲା । ଆଗରୁ ରାଜ୍ୟର ହାର ୧୮.୯ ରହିଥିବା କୁହାଯାଇଛି । ରାଜ୍ୟ ହାରରୁ  ବେଶିଥିବା ଜିଲ୍ଲାଗୁଡିକ ହେଲା ଝାରସୁଗୁଡା (୧୯.୦), ସମ୍ବଲପୁର (୧୯.୨), ସୁନ୍ଦରଗଡ (୧୯.୭), କେନ୍ଦୁଝର (୧୯.୩), ଭଦ୍ରକ(୧୯.୨), କେନ୍ଦ୍ରାପଡା (୧୯.୫), ଜଗତସିଂହପୁର (୧୯.୪), କଟକ (୧୯.୨), ଯାଜପୁର (୧୯.୪), ଖୋର୍ଦ୍ଧା (୧୯.୪), ପୁରୀ (୧୯.୨),  କନ୍ଧମାଳ (୧୯.୦) ଓ ରାୟଗଡା (୧୯.୦) । ଅନ୍ୟ ସମସ୍ତ ଜିଲ୍ଲାରେ ମଧ ଏହା ୧୮ ବର୍ଷରୁ ଅଧିକ ରହିଛି । ତେବେ ହାରାହାରି ବୟସ ୧୮ ପାଖାପାଖି ହୋଇଥିବାରୁ ୧୮ ବୟସରୁ କମ୍ ବୟସରେ ବିବାହ କରିଥିବା ବ୍ୟକ୍ତି ଜିଲ୍ଲାଗୁଡିକରେ ରହିଛନ୍ତି । ତେଣୁ ସ୍ତ୍ରୀଙ୍କର ବିବାହ ବୟସ ବଢାଇବା ପାଇଁ ଏ ଜିଲ୍ଲାଗୁଡିକରେ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଆବଶ୍ୟକ । ପୁରୁଷମାନଙ୍କ କ୍ଷେତ୍ରରେ ଏହି ବୟସ ଓଡିଶା ପାଇଁ ୨୩.୯ରହିଥିବାବେଳେ, ଏଥିସହ ସମାନ ବା ତା'ଠାରୁ ବେଶୀଥିବା ଜିଲ୍ଲା ଗୁଡିକ ହେଲା ସୁନ୍ଦରଗଡ (୨୪.୧), କେନ୍ଦୁଝର (୨୩.୯), ମୟୂରଭଞ୍ଜ (୨୪.୫), ବାଲେଶ୍ୱର (୨୪.୪), ଭଦ୍ରକ (୨୪.୭), କେନ୍ଦ୍ରାପଡା (୨୪.୯), ଜଗତସିଂହପୁର (୨୪.୬), କଟକ (୨୫.୨), ଯାଜପୁର (୨୪.୫), ଢେଙ୍କାନାଳ (୨୪.୧), ନୟାଗଡ (୨୪.୨), ଖୋର୍ଦ୍ଧା (୨୪.୯), ପୁରୀ (୨୪.୪) ଏବଂ ଗଞ୍ଜାମ (୨୪.୩) । ଅନ୍ୟାନ୍ୟ ଜିଲ୍ଲାରେ ଏହି ବୟସ ରାଜ୍ୟଠାରୁ କମ୍ ଜଣାପଡେ । କେତେକ ଜିଲ୍ଲାରେ ପୁରୁଷ ବୟସ ରାଜ୍ୟ ତୁଳନାରେ ଅଧିକ ଥିଲାବେଳେ ସ୍ତ୍ରୀ ବୟସ ରଜ୍ୟ ହାରଠାରୁ କମ୍ ରହିଛି । ଏଭଳି ଜିଲ୍ଲାରେ ସ୍ତ୍ରୀ ପୁରୁଷ ମଧ୍ୟରେ ବୟସ ପାର୍ଥକ୍ୟ କିଛି ସାମାଜିକ ସମସ୍ୟା ସୃଷ୍ଟି କରିପାରେ, ତେଣୁ ଉପଯୁକ୍ତ ଦୃଷ୍ଟି ଆକର୍ଷଣର ଆବଶ୍ୟକତା ରହିଛି । ଗ୍ରାମାଞ୍ଚଳ ଓ ସହରାଞ୍ଚଳ ଭେଦରେ ସମୂହ ହାର ଭଳି ସ୍ଥିତି ଥିବା ଜିଲ୍ଲାଗୁଡିକରେ ଜଣାପଡେ ।

### ସାମାଜିକ ଗୋଷ୍ଠୀ ଭେଦରେ ଓଡିଶାରେ ବିବାହ ବୟସ

ଅନେକ ସମୟରେ ଧାର୍ମିକ କଟକଣା ଭାବେ ଗଣା ଯାଉଥିବା ଅନେକ ପ୍ରଥା ଶେଷରେ ସମାଜ ଗଠନର ଭୂମିକା ଗ୍ରହଣ କରିଥାଏ । ସେଭଳି ସମାଜିକ କଟକଣାକୁ ଧର୍ମୀୟ ସ୍ୱୀକୃତିର ରୂପଦେଇ ସମାଜରେ ମଣିଷର ଚଳଣିକୁ ନିୟନ୍ତ୍ରଣ କରାଯାଏ । ତେଣୁ ଧର୍ମ ଭେଦରେ ବିବାହ ବୟସ ସାମାଜିକ ପରିସ୍ଥିତିର ପରିପ୍ରକାଶ ମାତ୍ର । ୨୦୦୧ ଜନଗଣନାରେ ବର୍ତ୍ତମାନ ବିବାହିତ ସ୍ତ୍ରୀଙ୍କ ବୟସ ହାରାହାରି ୧୮.୯ ହିନ୍ଦୁଙ୍କ ପାଇଁ ହୋଇଥିଲାବେଳେ ମୁସଲମାନଙ୍କ ପାଇଁ ୧୮.୮ । ସେହିଭଳି ଖ୍ରୀଷ୍ଟିଆନ୍ଙ୍କ ପାଇଁ ୧୯.୭ ଥିଲାବେଳେ ଶିଖ୍ଙ୍କ ପାଇଁ ୨୦.୬ । ବୌଦ୍ଧ ଧର୍ମୀ ଏବଂ ଜୈନ ଧର୍ମୀମାନଙ୍କ ପାଇଁ ଯଥାକ୍ରମେ ୧୯.୧ ଏବଂ

୨୦.୦ । ଭାରତରେ ତଫସିଲଭୁକ୍ତ ଜାତି ଏବଂ ଉପଜାତିଙ୍କ ସ୍ୱତନ୍ତ୍ର ପରିଚୟ ଏବଂ ସାମାଜିକ ଚଳଣି ରହିଛି । ତେଣୁ ପ୍ରତ୍ୟେକ କ୍ଷେତ୍ରରେ ବିବାହ ବୟସ ଭିନ୍ନ ଭିନ୍ନ ହେବାର ସମ୍ଭାବନା ରହିଛି । ସେ ଦୃଷ୍ଟିରୁ ଦେଖିଲେ ଓଡିଶାରେ ବର୍ତ୍ତମାନ ବିବାହିତ ସ୍ତ୍ରୀଙ୍କ ହାରାହାରି ବିବାହ ବୟସ ତଫସିଲଭୁକ୍ତ ଜାତିଙ୍କ ପାଇଁ ୧୮.୫ ଏବଂ ଉପଜାତିଙ୍କ ପାଇଁ ୧୮.୯ । ସେଭଳି ତାଙ୍କୁ ବିବାହ କରିଥିବା ପୁରୁଷଙ୍କ କ୍ଷେତ୍ରରେ ଏହି ବୟସ ଯଥାକ୍ରମେ ୧୩.୪ ଏବଂ ୨୩.୦ । ସ୍ତ୍ରୀଙ୍କ କ୍ଷେତ୍ରରେ ଉପଜାତିଙ୍କ ବୟସ ବେଶୀ ଥିଲାବେଳେ ପୁରୁଷଙ୍କ କ୍ଷେତ୍ରରେ ଏହା କମ୍ ।

ଶିକ୍ଷାଗତ ଯୋଗ୍ୟତା ଭେଦରେ ହାରାହାରି ବିବାହ ବୟସ ୧୯୯୬-୨୦୦୧ ସମୟ ପାଇଁ ଅନୁଧ୍ୟାନ କଲେ ଜଣାଯାଏ, ସ୍ତ୍ରୀ ଅଣସ୍ୱାକ୍ଷରଙ୍କ କ୍ଷେତ୍ରରେ ଏହା ୧୯.୫ ହୋଇଥିବାବେଳେ ସାକ୍ଷରଙ୍କ ପାଇଁ ୨୦.୯ । ସେଭଳି ଶିକ୍ଷାର ସ୍ତର ବଢିବା ସାଙ୍ଗକୁ ପ୍ରାଥମିକ ସ୍ତରରୁ କମ୍‌ଙ୍କ ପାଇଁ ରେକର୍ଡ ଭୁକ୍ତ ହୋଇଥିବା ୧୯.୮ ବଢି, ସ୍ନାତକ ଓ ତଦୂର୍ଦ୍ଧ୍ୱ ସ୍ତରପାଇଁ ୨୪.୩ । ସେଭଳି କ୍ରମରେ ପୁରୁଷ ଅଣସ୍ୱାକ୍ଷରଙ୍କ ପାଇଁ ଏହା ୨୩.୪ ଏବଂ ସାକ୍ଷରଙ୍କ ପାଇଁ ୨୫.୬ । ପ୍ରାଥମିକ ସ୍ତରପାଇଁ ଆକଳିତ ୨୪.୦ ଥିଲାବେଳେ ଏହା ପ୍ରାୟତଃ ବଢି ସ୍ନାତକ ଏବଂ ତଦୂର୍ଦ୍ଧ୍ୱ ପାଇଁ ଏହା ୨୮.୮ । ୨୦୦୧ ଜନଗଣନାର ତଥ୍ୟ ସ୍ପଷ୍ଟଭାବେ ପ୍ରତିପାଦିତ କରେ, ଶିକ୍ଷା ସହିତ ବିବାହ ବୟସର ଅଙ୍ଗାଙ୍ଗୀ ସମ୍ପର୍କ ରହିଛି ଓଡିଶା କ୍ଷେତ୍ରରେ ।

ବିବାହ ବୟସ ସାମାଜିକ ପ୍ରଥା ଓ ବିଶ୍ୱାସର ପ୍ରତିଫଳନ । ଜନସାଂଖ୍ୟିକ ସ୍ଥିତିକୁ ପ୍ରଭାବିତ କଲାବେଳେ ଏହା ମଧ୍ୟ ସମାଜିକ ସ୍ଥିତିର ଏକ ମୁଖ୍ୟ ସୂଚକ କେତେକ କ୍ଷେତ୍ରରେ । ତେବେ ଓଡିଶାର ସାମାଜିକ ସ୍ଥିତି ଏ କ୍ଷେତ୍ରରେ ସେତେ ପ୍ରଭାବଶାଳୀ ନ ହୋଇଥିଲେ ମଧ୍ୟ ବିବାହ ବୟସ ବୃଦ୍ଧିପାଇଁ ଗଣଚେତନାର ଉଦ୍ରେକ କ୍ଷେତ୍ରରେ ନିଆଯାଇଥିବା ପଦକ୍ଷେପର ପରିଣାମ ହୋଇଥାଇପାରେ । ଭାରତ ତୁଳନାରେ ଓଡଶାର ସ୍ଥିତି ଏ ଦୃଷ୍ଟିରୁ ଭଲ ପ୍ରାୟ ପ୍ରତ୍ୟେକ ଜିଲ୍ଲାରେ । ବିବାହ ବୟସ ବୃଦ୍ଧିର ପ୍ରତିଫଳନ ମଧ୍ୟ ଭାରତ ତୁଳନାରେ ଓଡିଶାର ପ୍ରଜନନ ହାର କମ୍ ଥିବାଭଳି ତଥ୍ୟରୁ ଅନୁମାନ କରାଯାଇପାରେ ।




ଲୋକନୃତ୍ୟ ଜରିଆରେ ଜନଗଣନା ବାର୍ତ୍ତାର ପ୍ରସାର ।

# ଜନଗଣନାରେ ସଂଗୃହୀତ ତଥ୍ୟର ବ୍ୟବହାର

**ଆ**ଇନତଃ ଦେଶର ଜନସଂଖ୍ୟା ସମ୍ପର୍କୀୟ ସଠିକ୍ ତଥ୍ୟ ପାଇବା ପାଇଁ ଦଶବର୍ଷୀୟ ଜନଗଣନା ଏକ ଆବଶ୍ୟକତା । ନୀତି ନିର୍ଦ୍ଧାରଣକାରୀମାନେ ସ୍ୱୀକାର କରନ୍ତି, ନୀତି ନିର୍ଦ୍ଧାରଣ ପ୍ରକ୍ରିୟାପାଇଁ ଜନଗଣନା ଅନେକ ମୂଲ୍ୟବାନ ତଥ୍ୟ ସଠିକ୍ ଭାବେ ଦେଇଥାଏ । ବର୍ତ୍ତମାନ ସମୟରେ, ପ୍ରତ୍ୟେକ ସ୍ତରର ନୀତି ନିର୍ଦ୍ଧାରଣକାରୀ, ସରକାରୀ ବା ଘରୋଇ ବ୍ୟବସାୟୀ କ୍ଷେତ୍ରରେ ପରିବାର, ଗବେଷକ ଓ ଅନ୍ୟାନ୍ୟ ସଂସ୍ଥା ଜନଗଣନାରୁ ମିଳୁଥିବାର ଜନସଂଖ୍ୟାକୁ ଛାଡି ବିଭିନ୍ନ ପ୍ରକାରର ତଥ୍ୟର ବହୁକ୍ଷେତ୍ରରେ ବ୍ୟବହାର କରୁଛନ୍ତି । ନିମ୍ନରେ ବିଭିନ୍ନ ସ୍ତରରେ ବ୍ୟବହାରର କିଛି ସୂଚନା ଦିଆଗଲା ।

**କେନ୍ଦ୍ର ସରକାରରେ ବ୍ୟବହାର**

**କେନ୍ଦ୍ର ସରକାର ଜନଗଣନା ତଥ୍ୟକୁ ବ୍ୟବହାର କରୁଥିବା କିଛି କ୍ଷେତ୍ର -**

୧. ବିଭିନ୍ନ ଆଇନ (ଭାଷା, ଲିଙ୍ଗଗତ ବୈଷମ୍ୟ ଇତ୍ୟାଦି କ୍ଷେତ୍ରପାଇଁ ପ୍ରଣୀତ ହୋଇଥିବା) ର ପାଳନ ସମ୍ପର୍କରେ ତଦାରଖ କରିବା ।

୨. ଅର୍ଥନୈତିକ ଉପଲବଧିର ଆକଳନ

୩. ଅଳ୍ପ ଆୟବର୍ଗ ଜନସଂଖ୍ୟା ଏବଂ ପରିବାରର ସାହାଯ୍ୟକାରୀ ଯୋଜନା ପ୍ରଣୟନ ଓ ତାର କାର୍ଯ୍ୟାନ୍ୱୟନ

୪. ବୃଦ୍ଧ ଏବଂ ଭିନ୍ନକ୍ଷମମାନଙ୍କ ପାଇଁ ଆଇନ୍ ଓ କାର୍ଯ୍ୟକ୍ରମ

୫. ଜାତୀୟ ଶିକ୍ଷା କାର୍ଯ୍ୟକ୍ରମର ପାଇଁ ଅର୍ଥଦାନ ଏବଂ ମୂଲ୍ୟାଙ୍କନ

୬. ଜନଗଣନାର ତଥ୍ୟ ଓ ଗୃହର ସ୍ଥିତି, ଗମନା ଗମନ ତଥା ଶକ୍ତି ବ୍ୟବହାର ସମ୍ବନ୍ଧୀୟ ଓ ଅନ୍ୟାନ୍ୟ ଜାତୀୟ ନୀତି ନିର୍ଦ୍ଧାରଣ ଏବଂ ପ୍ରଗତିର ଆକଳନ ।

୭. ପାର୍ଲ୍ୟାମେଣ୍ଟେରୀ କ୍ଷେତ୍ରଗୁଡିକର ନିର୍ଦ୍ଧାରଣ ଜାତୀୟ ନୀତି ଅନୁସାରେ ।

**ରାଜ୍ୟ ଏବଂ ସ୍ଥାନୀୟ ସରକାରୀ ବ୍ୟବହାର**

ଉପରୋକ୍ତ ବ୍ୟବହାର ରାଜ୍ୟସ୍ତରରେ ମଧ୍ୟ ଯୋଜନା ପାଇଁ ପ୍ରଯୁଜ୍ୟ

୧. ଜିଲ୍ଲା ତଥା ତଳସ୍ତରର ପ୍ରଶାସନିକ ଏକକର ସୀମା ନିର୍ଦ୍ଧାରଣ

୨. ନିର୍ବାଚନ ପାଇଁ ବିଧାନ ସଭା ତଥା ପଞ୍ଚାୟତସ୍ତରର କ୍ଷେତ୍ରର ସୀମା ନିର୍ଦ୍ଧାରଣ

୩. ଶିକ୍ଷା, ସ୍ୱାସ୍ଥ୍ୟ, ପରିବେଶ ସୁରକ୍ଷା ଇତ୍ୟାଦି କ୍ଷେତ୍ରର ଯୋଜନା ପାଇଁ

୪. ଦୈବୀ ଦୁର୍ବିପାକ ସମୟରେ ସୃଷ୍ଟ ଯନ୍ତ୍ରଣାର ଉପଶମ ପାଇଁ ଯୋଜନା

**ବ୍ୟବସାୟରେ ବ୍ୟବହାର**

୧. ଖାଉଟିଙ୍କ ଆବଶ୍ୟକତାର ଆକଳନ ପାଇଁ

୨. ଦ୍ରବ୍ୟ ଉତ୍ପନ୍ନ ଏବଂ ତା'ର କିଣା ବିକାର ଯୋଜନା ପ୍ରଣୟନ ପାଇଁ

୩. ଭାଷା ସମ୍ପର୍କରେ ତଥ୍ୟ ବ୍ୟବସାୟରେ ପ୍ରଚାର କାର୍ଯ୍ୟକ୍ରମ ପ୍ରସ୍ତୁତି ପାଇଁ

୪. ଆବଶ୍ୟକତା ସମ୍ପର୍କରେ ଆଗୁଆ ଆକଳନ ପାଇଁ

୫. କେଉଁଠି ବ୍ୟବସାୟ କଲେ ଭଲହେବ ତାହା ନିର୍ଣ୍ଣୟ ପାଇଁ

୬. ସରକାରୀ ଆଇନ୍ ଅନୁସାରେ ପ୍ରତ୍ୟେକ କର୍ମୀଙ୍କୁ ସମାନ ସୁଯୋଗ ଦେବାପାଇଁ ଓ ଆଇନ୍‌ଗୁଡ଼ିକର ଯଥାଯଥ ପାଳନ ପାଇଁ

**ଗୋଷ୍ଠୀସ୍ତରରେ ବ୍ୟବହାର**

୧. ସ୍ୱାସ୍ଥ୍ୟ, ଶିକ୍ଷା ତଥା ଅନ୍ୟ ସାମାଜିକ ସେବା ପ୍ରଦାନ ପାଇଁ

୨. ସରକାର ଏବଂ ବେସରକାରୀ ସଂସ୍ଥାଦ୍ୱାରା ଦୈବୀ ଦୁର୍ବିପାକ ସମୟରେ ସୁରକ୍ଷା ଓ ଯନ୍ତ୍ରଣା ଉପଶମ ପାଇଁ

**ବ୍ୟକ୍ତିଗତ ସ୍ତରରେ ବ୍ୟବହାର**

୧. ପ୍ରତ୍ୟେକ ବ୍ୟକ୍ତି ନିଜଘର କିଣିବା ପାଇଁ ଚାକିରିର ଚୟନ କିମ୍ବା ବ୍ୟବସାୟର ଆରମ୍ଭ ପାଇଁ ଜନଗଣନା ତଥ୍ୟର ବ୍ୟବହାର କରିପାରେ ।

**ଶୈକ୍ଷିକ ଗବେଷଣାଗତ ବ୍ୟବହାର**

୧. ମୌଳିକ ବା କାର୍ଯ୍ୟାନୁଷ୍ଠାନ ସମ୍ପର୍କିତ ଗବେଷଣା ପାଇଁ ଜନଗଣନା ତଥ୍ୟର ବ୍ୟବହାର ସର୍ବଜନ ବିଦିତ । ଗବେଷଣାର କ୍ଷେତ୍ରଗୁଡ଼ିକ ହେଲା

- ଗ୍ରାମ ବା ସହର ସମ୍ପର୍କରେ
- ସାମାଜିକ ଗୋଷ୍ଠୀମାନଙ୍କ ସମ୍ପର୍କରେ ବିଶେଷ କରି ଅଳ୍ପ ଜନସଂଖ୍ୟା ବିଶିଷ୍ଟ ଜାତି ବା ଜନଜାତି ସମ୍ପର୍କରେ
- ସ୍ଥାନାନ୍ତର ବା ଦେଶାନ୍ତର ସମ୍ପର୍କରେ
- ସମୟ ଅନୁକ୍ରମିକ ତଥ୍ୟରୁ ଗତି ଓ ପ୍ରଗତି ସମ୍ପର୍କରେ ଆକଳନ ପାଇଁ
- ବିଭିନ୍ନ ହାରର କଳନା ପାଇଁ ଅନ୍ୟାନ୍ୟ ସର୍ଭେ ଇତ୍ୟାଦି ସହିତ ଅନ୍ୟାନ୍ୟ ସର୍ଭେର ତଥ୍ୟଗୁଡ଼ିକ ସହ ତୁଳନା ପାଇଁ ।

ଜନଗଣନାରେ ସଂଗୃହୀତ ତଥ୍ୟ ପ୍ରତ୍ୟେକ ମନୁଷ୍ୟ ଜୀବନକୁ ପ୍ରଭାବିତ କରେ ଏବଂ ପ୍ରତ୍ୟେକ ମଣିଷ ତଥ୍ୟ ଦେବା ପଦ୍ଧତିରେ ଭାଗ ନେଇଥାଏ ଜନଗଣନାକୁ ସମ୍ପୂର୍ଣ୍ଣ ଏବଂ ସଠିକ୍ ତଥ୍ୟ ଦେବାପାଇଁ । ସଂକ୍ଷେପରେ କହିବାକୁ ଗଲେ କେନ୍ଦ୍ର, ରାଜ୍ୟ ଏବଂ ସ୍ଥାନୀୟ ସ୍ତରରେ ଜନଗଣନାର ଜନଜୀବନର ଉନ୍ନତି ପାଇଁ ବିଶେଷ ଭୂମିକା ରହିଛି । ସେଭଳି ବ୍ୟବସାୟିକ କ୍ଷେତ୍ରରେ ଜନଗଣନାର ତଥ୍ୟ ନୂତନ ଯୋଜନାର ରୂପରେଖ ନିର୍ଦ୍ଧାରଣ ପାଇଁ ବ୍ୟବହୃତ ହୁଏ । ତଥା ପୁରୁଣା ବ୍ୟବସାୟର ସଂଶୋଧନ ଏବଂ ଅଧିକ ବ୍ୟାପକ କରିବା ପାଇଁ ବ୍ୟବହାର ହୁଏ । ଡ. ଏନ୍. କେ. ଥିଙ୍ଗାଳୟା, ଏକ ଜଣାଶୁଣା ଅର୍ଥନୀତିଜ୍ଞଙ୍କ ଉକ୍ତି ପ୍ରାସଙ୍ଗିକ ତେଣୁ ଉଦ୍ଧୃତ । ସେ କହିଥିଲେ, ବ୍ୟାଙ୍କ ଅଧିକାରୀମାନେ ୨୦୦୧ ଜନଗଣନା ରିପୋର୍ଟ ଉପରେ ଦୃଷ୍ଟି ଦେଇ ଜଣାନ୍ତୁ ଯେ ଅନେକ ଗାଁରେ ବ୍ୟାଙ୍କିଙ୍ଗ୍‌ର ସୁବିଧା ନାହିଁ । ଗ୍ରାମସ୍ତରର ପରିବାରଗୁଡ଼ିକ ସମ୍ପର୍କରେ ତଥ୍ୟ ତାଙ୍କର ଅର୍ଥନୈତିକ ଅନ୍ତର୍ନିବେଶ କାର୍ଯ୍ୟକ୍ରମର କାର୍ଯ୍ୟାନ୍ୱୟନ ପାଇଁ ଏକ ପ୍ରଭାବଶାଳୀ ଅସ୍ତ୍ର ଭାବେ କାର୍ଯ୍ୟକାରୀ ହୋଇପାରିବ । ପରିଶେଷରେ ଜନଗଣନାରର ସୀମାବଦ୍ଧତା ବିଷୟରେ ସମ୍ୟକ ଧାରଣା ଦେବାକୁ ଅର୍ଦ୍ଧିତା ରେୟାରଙ୍କ ଉକ୍ତିର ଉଦ୍ଧାର କରାଗଲା । ଜଣେ ସ୍ତ୍ରୀ ଅନେକ ପେଷଣ ମଧ୍ୟରେ ଯିବା ସତ୍ତ୍ୱେ, ଜଣେ ଗୃହିଣୀ ଏବେ ବି ବର୍ଗୀକୃତ ହୁଏ, ଏକ ଅଣ-ଅର୍ଥନୈତିକ ବ୍ୟକ୍ତିଭାବେ ଗଣାଯାଏ । ଏବେ ସମୟ ଆସିଛି, ଗୃହ ତିଆରି କଲା ଲୋକକୁ ତା'ର ଯଥାଯୋଗ୍ୟ ମୂଲ୍ୟ ଦେବା ଉଚିତ୍ । ଏଭଳି ଅନେକ ସୀମିତତାର ଦୂରୀକରଣ ଜନଗଣନା ତଥ୍ୟର ବ୍ୟବହାରକୁ ଅଧିକ ବ୍ୟାପକ ତଥା ଅର୍ଥପୂର୍ଣ୍ଣ କରାଇବ ।



# ଜନଗଣନା ବିଷୟରେ ବାରମ୍ବାର ପଚରା ଯାଉଥିବା ପ୍ରଶ୍ନାବଳୀ

**ଜନଗଣନା କ'ଣ ?**

ଜନସଂଖ୍ୟାର ପ୍ରତ୍ୟେକ ସଭ୍ୟ/ସଭ୍ୟାଙ୍କ ବିଷୟରେ ତଥ୍ୟ ଯୋଗାଡ଼ କରିବାର ପ୍ରକ୍ରିୟାକୁ ଜନଗଣନା କୁହାଯାଏ। ସର୍ବେକ୍ଷଣ ନମୁନା ଭାବେ ନିଆଯାଉଥିବା ଜନସଂଖ୍ୟାର ଏକ ନିର୍ଦ୍ଦିଷ୍ଟ ଭାଗ ବିଷୟରେ ତଥ୍ୟ ସଂଗ୍ରହ କରିବାଠାରୁ ଏହା ଭିନ୍ନ। ପରିସଂଖ୍ୟାନ ବିଷୟକ ତଥ୍ୟ ଆହରଣ କରିବା ଦିଗରେ ଏହା ଏକ ପ୍ରକ୍ରିୟା ଏବଂ ଗଣତନ୍ତ୍ର ପାଇଁ ଏହା ଅତ୍ୟନ୍ତ ଉପଯୋଗୀ।

**ଜନଗଣନା କହିଲେ କ'ଣ ବୁଝାଏ ?**

ପ୍ରାୟତଃ ପ୍ରତ୍ୟେକ ୫ ବା ୧୦ ବର୍ଷ ଅନ୍ତରରେ ସରକାରୀ ସ୍ତରରେ ଏକ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ଜନସଂଖ୍ୟା ଗଣନା କରିବାକୁ "ଜନଗଣନା" କୁହାଯାଏ। ଜନଗଣନାରେ ଲୋକଙ୍କ ଠିକଣା, ବୟସ, ଆୟସୀମା, ଜାତି ବିଷୟରେ ତଥ୍ୟ ସଂଗ୍ରହ କରାଯାଏ। ଯାହା ଦେଶର ଯୋଜନା ପ୍ରଣୟନ ଓ ଉନ୍ନୟନ ମୂଳକ କାର୍ଯ୍ୟରେ ଲାଗେ।

**ପୁରାତନ ଯୁଗରେ ଜନଗଣନା ହେଉଥିଲେ ଏହାର ବିଶେଷ ବିବରଣୀ ଦିଅନ୍ତୁ।**

ଖଜଣା ନିରୂପଣ କରିବା ପାଇଁ ରୋମ ରାଜ୍ୟରେ ଜନଗଣନା କରାଯାଉଥିଲା। ରୋମାନ ଭାଷାର 'ସେନସର' ଶବ୍ଦରୁ 'ସେନସସ୍' ଶବ୍ଦର ଉତ୍ପତ୍ତି। ରୋମର ଲୋକସଂଖ୍ୟା ଗଣନା କରି ଖଜଣା ନିର୍ଦ୍ଧାରଣ କରିବାର ଅଧିକାରୀଙ୍କୁ 'ସେନସର' କୁହାଯାଉଥିଲା। ପବିତ୍ର ଗ୍ରନ୍ଥ ବାଇବେଲର ସଂଖ୍ୟାତତ୍ତ୍ୱ ବହିରେ ବର୍ଣ୍ଣିତ ଅଛି ଯେ ଈଶ୍ୱରଙ୍କ ଅଧାଦେଶ ପାଇ ମୋଜେସ ଈଶ୍ୱରଙ୍କ ଲୋକମାନଙ୍କୁ ମିଶର ଦେଶରୁ ନେଲାବେଳେ ଜନଗଣନା କରାଇଥିଲେ। ଇସ୍ରାଏଲର ରାଜା ଡେଭିଡ଼ ପ୍ରତ୍ୟେକ ଲୋକଙ୍କୁ ନିର୍ଦ୍ଦିଷ୍ଟ ନମ୍ବର ପ୍ରଦାନ ପାଇଁ ଆଦେଶ ଦେଇଥିଲେ ଯାହାକୁ ନିନ୍ଦା କରାଯାଇଥିଲା। ଯଦିଓ ଏହା ସମ୍ପୂର୍ଣ୍ଣଭାବରେ ସ୍ୱଚ୍ଛ ନୁହେଁ କେଉଁ କାରଣରୁ ରକ୍ଷଣଶୀଳ ଏବଂ ପ୍ରୋଟେଷ୍ଟାଣ୍ଟ ବିଦ୍ୱାନମାନେ ବିଶ୍ୱାସ କରୁଥିଲେ କି ଈଶ୍ୱର ଇଚ୍ଛା କରୁନଥିଲେ କି ରାଜା ଡେଭିଡ଼ଙ୍କ ଅଧୀନରେ ସଂଯୁକ୍ତ ରାଷ୍ଟ୍ର ରହୁ ଏବଂ ରାଜା ସୋଲୋମନ ନିଜର ଯୁଦ୍ଧାସ୍ତ୍ର ଉପରେ ନିର୍ଭର କରନ୍ତୁ। ଅନ୍ୟ ଗୋଟିଏ କାରଣ ଯାହା ଉପସ୍ଥାପିତ କରାଯାଏ କି ରୋମ ଓ ମିଶର ଦେଶର ଜନଗଣନା ପରି, ଖଜଣା ନିର୍ଦ୍ଧାରଣ ପାଇଁ ଜନଗଣନା ଉପଯୋଗୀ ହେବ। ଖ୍ରୀଷ୍ଟଧର୍ମର ପବିତ୍ର ଧର୍ମଗ୍ରନ୍ଥ ବାଇବେଲର ନୂତନ ଟେଷ୍ଟାମେଣ୍ଟର ଲ୍ୟୁକ ବହିରେ (Book of Luke) ରୋମର ଜନଗଣନାର ଉଲ୍ଲେଖ ଅଛି।

**ଭାରତର ଜନଗଣନା କ'ଣ ? ଏହାର ଉପଯୋଗିତା କେତେ ?**

୧୮୭୨ ମସିହାଠାରୁ ଜନସଂଖ୍ୟା ସମ୍ବନ୍ଧୀୟ ପ୍ରତ୍ୟେକ ବିଷୟରେ ନିର୍ଭରଯୋଗ୍ୟ ତଥ୍ୟ ଯଥା ଆର୍ଥିକ କାର୍ଯ୍ୟକଳାପର ବିବରଣୀ, ସାକ୍ଷରତା ହାର ଓ ଶିକ୍ଷା, ଗୃହ ଏବଂ ପରିବାରରେ ଉପଲବ୍ଧ ସୁବିଧା, ସହରାଞ୍ଚଳ ସମ୍ବନ୍ଧୀୟ, ପ୍ରଜନନ ଓ ମୃତ୍ୟୁ ସମ୍ବନ୍ଧୀୟ ତଥ୍ୟ, ତଫସିଲଭୁକ୍ତ ଜାତି ଓ ଜନଜାତି, ଭାଷା, ଧର୍ମ, ସ୍ଥାନାନ୍ତର, ଅକ୍ଷମତା, ଅନ୍ୟାନ୍ୟ ସାମାଜିକ ଓ ସାଂସ୍କୃତିକ ତଥ୍ୟ ମିଳିଥାଏ। ୨୦୧୧ ମସିହାର ଜନଗଣନା ଭାରତର ୧୫ତମ ଜାତୀୟ ଜନଗଣନା ହେବ। ସହରାଞ୍ଚଳର ପ୍ରତ୍ୟେକ ୱାର୍ଡ ଏବଂ ପ୍ରତ୍ୟେକ ଗ୍ରାମ ବିଷୟରେ ମୌଳିକ ତଥ୍ୟ ଜନଗଣନାରୁ ମିଳିଥାଏ। କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଯୋଜନା ଓ ନୀତି ନିର୍ଦ୍ଧାରଣରେ ଏହା ମୂଲ୍ୟବାନ ତଥ୍ୟ ଯୋଗାଇଥାଏ ଏବଂ ଆର୍ନ୍ତଜାତୀୟ ଏବଂ ଜାତୀୟ ସଂସ୍ଥା, ବିଦ୍ୱାନ, ବ୍ୟବସାୟୀ, ଶିଳ୍ପୋଦ୍ୟୋଗୀ ଏବଂ ଅନ୍ୟାନଙ୍କ କାର୍ଯ୍ୟରେ ଆସେ। ଲୋକସଭା, ବିଧାନସଭା, ପଞ୍ଚାୟତ ଏବଂ ସହରାଞ୍ଚଳରେ ନିର୍ବାଚନ ପାଇଁ ସୀମା ନିର୍ଦ୍ଧାରଣ ଏବଂ ସଂରକ୍ଷଣ ପାଇଁ ଦରକାରୀ ତଥ୍ୟ ଜନଗଣନାରୁ ମିଳିଥାଏ। ଗତ ଦଶନ୍ଧିର ଦେଶର ପ୍ରଗତିର ସମୀକ୍ଷା,

ସରକାରଙ୍କ ଚଳିତ କାର୍ଯ୍ୟାବଳୀର ନିରୀକ୍ଷଣ ଏବଂ ଭବିଷ୍ୟତ ଯୋଜନା ପ୍ରଣୟନରେ ଜନଗଣନା ସହାୟକ ହୋଇଥାଏ। ଏଥିପାଇଁ ଚଳିତ ୨୦୧୧ ଜନଗଣନାର ସ୍ଲୋଗାନ ହେଲା "ଆମର ଜନଗଣନା, ଆମର ଭବିଷ୍ୟତ"।

**କିଏ ଖବର ସଂଗ୍ରହ କରିବେ ?**

ସରକାରୀ କର୍ମଚାରୀ ଏନୁମୁରେଟର ଭାବରେ ନିଯୁକ୍ତ ପାଇ ପ୍ରତ୍ୟେକ ଘର ବୁଲି ଦରକାରୀ ଖବର ସଂଗ୍ରହ କରିଥାନ୍ତି।

**ମୁଁ କିପରି ଜାଣିପାରିବି ଯେ ମୋର ଘରକୁ ଆସିଥିବା ଜନଗଣନା କର୍ମଚାରୀ ବାସ୍ତବରେ ଜନଗଣନା ଅଧିକାରୀଙ୍କ ଦ୍ୱାରା ନିଯୁକ୍ତ ?**

ସେମାନେ ସେମାନଙ୍କ ସହ ନିଯୁକ୍ତିପତ୍ର ତଥା ଏକ ପରିଚୟପତ୍ର ନେଇଥାନ୍ତି। ଦରକାର ପଡ଼ିଲେ ଆପଣ ସେମାନଙ୍କୁ ଏସବୁ ଦେଖାଇବାକୁ କହିପାରନ୍ତି। ଅଞ୍ଚଳର ତହସିଲଦାରଙ୍କ ସହ ମଧ୍ୟ ଯୋଗାଯୋଗ କରିପାରନ୍ତି।

**ଜନଗଣନା ସମୟରେ କେଉଁମାନଙ୍କୁ ଗଣନାଭୁକ୍ତ କରାଯାଏ ?**

ଏନୁମେରସନ ସ୍ଥାନରେ ସମଗ୍ର ଗଣନା କାଳ ରହୁଥିବା ଏବଂ ସ୍ଥାୟୀ ବାସିନ୍ଦା ଗଣନା କାଳ ମଧ୍ୟରେ ଦିନଟିଏ ରହୁଥିବେ ସେମାନେ ଗଣତି ହେବେ।

**ଜନଗଣନା ମୋ ଠାରୁ ସଂଗୃହୀତ ତଥ୍ୟ କେତେଦୂର ଗୋପନୀୟ ଏବଂ ନିରାପଦ ?**

ଜନଗଣନା ଆଇନ ଅନୁସାରେ ଜନଗଣନାରେ ସଂଗୃହୀତ ତଥ୍ୟ ସମ୍ପୂର୍ଣ୍ଣ ଗୋପନୀୟ। କୌଣସି ଲୋକଙ୍କୁ ବ୍ୟକ୍ତିଗତ ତଥ୍ୟ ଦିଆଯାଏ ନାହିଁ। ମୋଟ ସଂଗୃହୀତ ତଥ୍ୟ ଯୋଜନା ପାଇଁ ଏବଂ ଗବେଷଣା ପାଇଁ ବ୍ୟବହାର ହେବ।

**ଦଶନ୍ଧି ଅର୍ଥ କ'ଣ ?**

୧୦ ବର୍ଷ ସମୟ। ପ୍ରାୟତଃ ଜନଗଣନା ପ୍ରତି ୧୦ ବର୍ଷରେ ପୃଥିବୀର ଅଧିକାଂଶ ଦେଶରେ ଅନୁଷ୍ଠିତ ହୋଇଥାଏ। ଏହି ଜନଗଣନାକୁ ଦଶନ୍ଧି ଜନଗଣନା କୁହାଯାଏ।

**କେବେ ଏବଂ କିପରି ଚଳିତ ଜନଗଣନା ହେଉଅଛି ?**

୨୦୧୧ର ପ୍ରଥମ ପର୍ଯ୍ୟାୟ ଜନଗଣନା କାର୍ଯ୍ୟ ସମଗ୍ର ଭାରତବର୍ଷରେ ଶେଷ ହୋଇଛି। ଏହା ଗୃହ ତାଲିକା ଏବଂ ଗୃହଗଣନା କାର୍ଯ୍ୟ। ଏହାପରେ ବ୍ୟକ୍ତିଗତ ଗଣନା କରାଯିବ ୯ ଫେବୃୟାରୀ ରୁ ୨୮ ଫେବୃୟାରୀ ଏବଂ ପୁନଃ ପରିଦର୍ଶନ ସମୟ ୧ ମାର୍ଚ୍ଚରୁ ୫ ମାର୍ଚ୍ଚ ୨୦୧୧।

**କେଉଁ ତାରିଖ ଓ ସମୟ ୨୦୧୧ ଜନଗଣନା ପାଇଁ ନିର୍ଦ୍ଧାରିତ ହୋଇଛି ?**

୨୦୧୧ ମାର୍ଚ୍ଚ ୧ ତାରିଖ (୦୦.୦୦) ଶୂନ୍ୟକାଳ।

**ଜନଗଣନାର ତଥ୍ୟ ସମସ୍ତ ଜନ ସମାଜ ଉପରେ ପ୍ରଭାବ କ'ଣ ?**

ଜନଗଣନାରୁ ସଂଗୃହୀତ ତଥ୍ୟ ସରକାରଙ୍କ ଦ୍ୱାରା ଦେଶର ପ୍ରଗତି ଓ ଉନ୍ନତି ପାଇଁ ହେଉଥିବା ଯୋଜନା ଓ ସମାଜ ମଙ୍ଗଳ ପାଇଁ ବ୍ୟବହୃତ ହୋଇଥାଏ।

**ଭାରତର ନାଗରିକମାନଙ୍କର ଜନଗଣନା ପ୍ରତି କର୍ତ୍ତବ୍ୟ କ'ଣ ?**

ପ୍ରତ୍ୟେକ ଭାରତର ନାଗରୀକ ମାନଙ୍କର ଦାୟିତ୍ୱ ହେଉଛି ପ୍ରତ୍ୟେକ ଏହି ସର୍ଭେରେ ଭାଗ ନେଇ ନିଜର ଉନ୍ନତି ପାଇଁ କାମ କରିବା। ଆପଣଙ୍କ ଅଞ୍ଚଳକୁ ଏବଂ ଗୃହକୁ ଆସୁଥିବା ଜନଗଣନା କର୍ମଚାରୀମାନଙ୍କୁ ସହଯୋଗ କରନ୍ତୁ। ସେମାନଙ୍କର ପ୍ରଶ୍ନଗୁଡ଼ିକ ଧୈର୍ଯ୍ୟର ସହ ଶୁଣନ୍ତୁ ଏବଂ ସତ୍ୟ ଖବର ଆପଣଙ୍କ ବିଷୟରେ ତଥା ଆପଣଙ୍କ ପରିବାର ବିଷୟରେ ଆନନ୍ଦର ସହ ଦିଅନ୍ତୁ। ପ୍ରତ୍ୟେକ ଅନୁସନ୍ଧାନ ଆପଣ ଭବିଷ୍ୟତର ମଙ୍ଗଳ ପାଇଁ ଉଦ୍ଦିଷ୍ଟ।

**ଜନଗଣନା ପରିପ୍ରେକ୍ଷୀରେ ଭାରତ କିଭଳି ଭାବରେ ଅନନ୍ୟ ?**

ଦେଶର ବିଶାଳତା ଏବଂ ବିଭିନ୍ନତା ମଧ୍ୟରେ ଜନଗଣନା କାର୍ଯ୍ୟ ଏବଂ ବିଭିନ୍ନ ତଥ୍ୟ ସମ୍ବନ୍ଧିତ ସଂଗୃହୀତ ହେଉଥିବାରୁ ଏହା ପୃଥିବୀରେ ଅଦ୍ୱିତୀୟ। ଏହି ଉନ୍ନତ ବିନା ପ୍ରତିରୋଧରେ ଜନଗଣନାର ପ୍ରଥା ଉନ୍ନତ ଦେଶରେ ମଧ୍ୟ ଭାରତ ଅଦ୍ୱିତୀୟ ଭାବରେ ଆଦୃତ।

**ମୁଁ କେବେ ୨୦୧୧ ଜନଗଣନା ତଥ୍ୟ ପାଇ ପାରିବି ?**

ଜନସଂଖ୍ୟାର ହିସାବ, ଜନଗଣନାର କିଛି ଦିନ ପରେ ଘୋଷଣା କରାଯିବ। ସର୍ବଶେଷ ପରିସଂଖ୍ୟାନ ତଥ୍ୟ ସମୟାନୁସାରେ ଘୋଷଣା କରାଯିବ।

**୨୦୧୧ ଜନଗଣନାର ତଥ୍ୟ କିଭଳି ମିଳିବ ?**

ଆଇ.ସି.ଆର ଜ୍ଞାନ କୌଶଳ ପ୍ରୟୋଗରେ କମ୍ପ୍ୟୁଟର ମାଧ୍ୟମରେ ଜନଗଣନା ତଥ୍ୟ ପ୍ରସ୍ତୁତ କରାଯାଇଛି। ଏହା ସିଡି

ମାଧମରେ ଏବଂ ଇଣ୍ଟରନେଟ ମାଧମରେ ମିଳିପାରିବ । କେତେକ ପ୍ରକାଶିତ ତଥ୍ୟ ସୂଚନା ଆକାରରେ ମିଳିପାରିବ ।

★ ଜନଗଣନା ସଂସ୍ଥାଦ୍ୱାରା ୨୦୧୧ ମସିହା ଜନଗଣନା ପାଇଁ ପ୍ରକାଶିତ ହେଉଥିବା ବହିଗୁଡିକର ତାଲିକା, ସିଡି ଏବଂ ଅନ୍ୟାନ୍ୟ ତଥ୍ୟ କେଉଁଠାରୁ ମିଳିପାରିବ ?

ଭାରତର ରେଜିଷ୍ଟ୍ରାର ଜେନେରାଲ ଓ ଜନଗଣନା କମିଶନର ପ୍ରକାଶନଗୁଡିକ ବିଷୟରେ ତଥ୍ୟ ପ୍ରଦାନ କରିବେ ଏବଂ ସେଗୁଡିକ ମଧ୍ୟ କାର୍ଯ୍ୟାଳୟର ୱେବ ସାଇଟ୍ http:// www ://censusindia.gov.in ରେ ଉପଲବ୍ଧ ହେବ ।

★ ଜନଗଣନା ଦ୍ୱାରା ପ୍ରକାଶିତ ହେଉଥିବା ବହି ଏବଂ ଅନ୍ୟାନ୍ୟ ତଥ୍ୟସମୂହ କ୍ରୟ କରିବାର ପଦ୍ଧତି କ'ଣ ?

'ସପିଙ୍ଗ୍ କାର୍ଟ' (Shopping Cart) ସୁବିଧାର ଉପଯୋଗ କରି ବହି ଏବଂ ଅନ୍ୟାନ୍ୟ ତଥ୍ୟ ସମ୍ବଳିତ ପ୍ରକାଶନଗୁଡିକୁ କ୍ରୟ କରିବା ପାଇଁ ତଥ୍ୟ ଉପଯୋଗ କାରୀଙ୍କୁ ଉପଦେଶ ଦିଆଯାଇଛି । ସମସ୍ତ ପ୍ରକ୍ରିୟା ବ୍ୟବହାର-ଯୋଗ୍ୟ ସୁବିଧା ଜନକ ପ୍ରଣାଳୀଦ୍ୱାରା ପରିଚାଳିତ ଏବଂ ଏହାକୁ ସହଜରେ ବ୍ୟବହାର କରିହେବ । ଆବଶ୍ୟକ ହେଉଥିବା ବହି/ସିଡି ପାଇବାକୁ ହେଲେ ସମୁଦାୟ ମୂଲ୍ୟ ଅଗ୍ରୀମ ପୈଠ କରିବାକୁ ଇଚ୍ଛୁକ ବ୍ୟକ୍ତିମାନଙ୍କ ଅନୁରୋଧ କରାଯାଉଛି ।

★ ୨୦୧୧ ମସିହାର ଜନଗଣନାରୁ ପରିବାରର ଆୟ ଏବଂ ବ୍ୟୟ ମିଳିପାରିବ କି ?

★ ୨୦୧୧ ମସିହାର ଜନଗଣନାରେ ଆୟ-ବ୍ୟୟର ତଥ୍ୟ ସଂଗ୍ରହ କରାଯିବ ନାହିଁ । ତେଣୁ ଜନଗଣନାର ଏହି ବିଷୟରେ ତଥ୍ୟଗୁଡିକ ମିଳିପାରିବ ନାହିଁ । କିନ୍ତୁ ୨୦୧୧ ମସିହା ଜନଗଣନାରେ ପରିବାରରେ ଉପଲବ୍ଧ ହେଉଥିବା ଆସବାବପତ୍ର ଯଥା - ଟେଲିଭିଜନ, ଟେଲିଫୋନ, ସାଇକେଲ, କାର, ମୋପେଡ ଇତ୍ୟାଦି ସଂଗୃହୀତ ହୋଇଛି ଏବଂ ଏଗୁଡିକ ସାହାଯ୍ୟରେ ପରୋକ୍ଷରେ ବିଶ୍ଳେଷଣ କରାଯାଇପାରେ ।

**ଭାରତର ଜନଗଣନାର ସ୍ୱତନ୍ତ୍ରତା କ'ଣ ?**

★ ଏପ୍ରିଲ ମାସ ୧ ତାରିଖ ୨୦୧୦ ମସିହା ଜନଗଣନା ଭାରତ ସ୍ୱାଧୀନତା ପରର ୭ମ ଜନଗଣନା ଏବଂ ୧୮୭୨ ମସିହାରେ ଆରମ୍ଭ ହୋଇଥିବା ଜନଗଣନାର ୧୫ ତମ ଜନଗଣନା ।

★ ଟିପ ଚିହ୍ନ ଓ ଫଟୋ କପି ସମସ୍ତ ସ୍ଥାୟୀ ବାସିନ୍ଦାମାନଙ୍କଠାରୁ ଏନୁମେରଟରମାନେ ସଂଗ୍ରହ କରିବେ ।

★ ମୋବାଇଲ, ଇଣ୍ଟରନେଟ, କମ୍ପ୍ୟୁଟର ଇତ୍ୟାଦି ବ୍ୟବହାରକାରୀମାନଙ୍କ ସମ୍ପର୍କରେ ତଥ୍ୟ ମିଳିବ ।

★ ୩୫ ରାଜ୍ୟ ଏବଂ କେନ୍ଦ୍ରାଞ୍ଚଳର ୧.୨ ବିଲିୟାନ ବାସଗୃହର ତଥ୍ୟ ସଂଗ୍ରହ ହେବ ।

★ ଏନୁମେରଟରମାନେ ୨୪ କୋଟି ପରିବାରକୁ ୨୦୧୧ ଜନଗଣନାରେ ପରିଦର୍ଶନ କରିବେ ।

★ ଏହା ୬୪୦ ଜିଲ୍ଲା ୫୭୬୭ ତହସିଲ, ୭୭୪୨ ସହର ଏବଂ ପ୍ରାୟ ୬ ଲକ୍ଷ ଗ୍ରାମକୁ ପରିଦର୍ଶନ କରିବେ ।

★ ଏହା ପ୍ରାୟ ୨୨୦୯ କୋଟି ଟଙ୍କା ଖର୍ଚ୍ଚ ହେବ ଏଥିରେ ବିସ୍ତୃତ ଭାବରେ ନାଗରିକମାନଙ୍କର ତଥ୍ୟ ସଂଗୃହୀତ ହେବ ।

★ ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟାର ପାଇଁ ଅନୁମୋଦିତ ଖର୍ଚ୍ଚ ୩୫୩୯.୨୪ କୋଟି ।

★ ସମସ୍ତ ଲୋକମାନଙ୍କର ରେଜିଷ୍ଟରରେ ଫଟୋ ନିଆଯିବ ।

★ ଦେଶର ସବୁ ଲୋକଙ୍କର ସମ୍ବଳିତ ତଥ୍ୟ ଗୋଟିଏ ଜାଗାରେ ରହିବ ।

★ ଜନଗଣନା ଦୁଇ ପର୍ଯ୍ୟାୟରେ ଅନୁଷ୍ଠିତ ହେବ । ୧ - ଗୃହଗଣନା, ୨ - ଜନସୁମାରି । ପ୍ରଥମ ପର୍ଯ୍ୟାୟ ହେବ ଏପ୍ରିଲ ଏବଂ ଜୁଲାଇ ମଧ୍ୟରେ ୪୫ ଦିନ ମଧ୍ୟରେ ଦେଶର ସମସ୍ତ ରାଜ୍ୟରେ । ୨ୟ ପର୍ଯ୍ୟାୟ ଜନଗଣନା ସମସ୍ତ ରାଜ୍ୟରେ ଏକ ସମୟରେ ୨୦୧୧ ଫେବୃୟାରୀ ୯ ରୁ ୨୮ ମଧ୍ୟରେ ହେବ ।

★ ୨୦୧୧ର ଜନଗଣନା ପାଇଁ ସ୍ଲୋଗାନ - ଆମ ଜନଗଣନା ଆମର ଭବିଷ୍ୟତ ।

★ ୧୯୪୮ ମସିହା ଜନଗଣନା ଆଇନ ଏବଂ ଜନଗଣନା ନିୟମ ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର ପ୍ରଥମ ଥର ନାଗରିକ ଆଇନ ବ୍ୟବସ୍ଥା ଅନୁସାରେ ହୋଇଅଛି ।

★ ଦେଶର ସମସ୍ତ ସ୍ଥାୟୀ ବାସିନ୍ଦାମାନଙ୍କର ବିସ୍ତୃତ ତଥ୍ୟ ସମ୍ବଳିତ ପରିଚୟ ହେଉଛି ଏନ. ପି. ଆର. ।

**ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର କ'ଣ ? ଏହାର ଉପଯୋଗିତା କ'ଣ ?**

ଏନ.ପି.ଆର. ଏକ ରେଜିଷ୍ଟର ଯେଉଁଥିରେ ଦେଶର ସ୍ଥାୟୀବାସିନ୍ଦାମାନଙ୍କ ତଥ୍ୟ ଥାଏ। ଏନ ପି ଆର ଏକ ବିସ୍ତୃତ ତଥ୍ୟ ସମ୍ବଳିତ ପରିଚୟ ଏହା ସରକାରୀ ସ୍ତରରେ ଯୋଜନାରେ ଉନ୍ନତିକରଣରେ ତଥା ଦେଶର ସୁରକ୍ଷାକୁ ମଜଭୁତ କରିଥାଏ। ଏହା ଦେଶର ପ୍ରଥମଥର ପାଇଁ ହେଉଅଛି।

**ଏଥିରେ ସନ୍ନିବେଶିତ ତଥ୍ୟ ଯେକୌଣସି ବ୍ୟକ୍ତିଙ୍କୁ ପ୍ରକାଶ କରାଯିବ କି ?**

ଜନଗଣନାରେ ସଂଗୃହୀତ ତଥ୍ୟ ଗୋପନୀୟ ଏହା କୌଣସି ପରିସ୍ଥିତିରେ ସରକାରୀ କିମ୍ବା ବେସରକାରୀ ସ୍ତରରେ ପ୍ରକାଶ ହେବନି। ଏନ. ପି. ଆର. ସଂଗୃହୀତ କିଛି ତଥ୍ୟ, ସ୍ଥାନୀୟ ଜନସାଧାରଣଙ୍କ ଅବଗତି ନିମିତ୍ତ, ସେମାନଙ୍କର ପ୍ରତିବାଦ ଯଦି ଥାଏ ଜଣାଇବା ପାଇଁ ପ୍ରକାଶ କରାଯାଏ। ଏହା ବାସ୍ତବରେ ନିର୍ବାଚନ ଭୋଟର ତାଲିକା ଏବଂ ଟେଲିଫୋନ ପୁସ୍ତକ ଭଳି ହୋଇଥାଏ। ଏନ୍.ପି.ଆର୍. କାର୍ଯ୍ୟ ଶେଷ ହେଲାପରେ, ସରକାରୀ ସ୍ତରରେ ସଂଗୃହୀତ ତଥ୍ୟର କାର୍ଯ୍ୟକାରୀ ହେବ।

**ମୋ ଘର ଯଦି ଏଥିରେ ସଂପୃକ୍ତ ନ ହୁଅନ୍ତି ତେବେ ମୁଁ କାହାକୁ ଯୋଗାଯୋଗ କରିବି ?**

ସ୍ଥାନୀୟ ତହସିଲଦାର / ୱାର୍ଡ ଅଧିକାରୀ ଆପଣଙ୍କ ଅଞ୍ଚଳର ଚିହ୍ନିତ ଅଧିକାରୀ। ଯଦି ଦରକାର ହୁଏ ଆପଣ ଜିଲ୍ଲାର କଲେକ୍ଟର/ଡେପୁଟି କଲେକ୍ଟର / DM କିମ୍ବା ସହର କମିଶନରଙ୍କୁ ସାକ୍ଷାତ କରିବେ। ଆପଣ ମଧ୍ୟ ଆମକୁ ଇମେଲ ଏବଂ ଟୋଲ ଫ୍ରି ନମ୍ବରରେ ସମ୍ବନ୍ଧ ସ୍ଥାପନ କରିପାରିବେ। ୱେବସାଇଟରେ ଏହା ଦିଆଯାଇଛି।

**ମୁଁ ଏନ.ପି.ଆର. ତଥ୍ୟ ୱେବସାଇଟରେ ଦେଇପାରିବି କି ?**

ନା, ବରଂ ଆପଣ ଜନଗଣନା ୱେବସାଇଟରୁ ପୂରଣ ହୋଇ ନଥିବା ତଫସିଲକୁ ଡାଉନଲୋଡ କରି ତଥ୍ୟ ପ୍ରସ୍ତୁତ ରଖନ୍ତୁ। ଏହା ଏନୁମେରଟରମାନଙ୍କୁ ଆପଣ ଘରକୁ ପ୍ରକୃତ ତଫସିଲ ପୂରଣ କରିବାକୁ ଆସିବେ ତାହା ସେମାନଙ୍କୁ ସାହାଯ୍ୟ କରିପାରେ।

---



ଜନଗଣନା ନିର୍ଦ୍ଦେଶକ ଶ୍ରୀ ବିଷ୍ଣୁପଦ ସେଠୀ ଜନଗଣନା-୨୦୧୧ ପାଇଁ ଉଦ୍ଦିଷ୍ଟ ଏକ ସ୍ମୃତି ଫଳକ ମାନ୍ୟବର ସାଂସଦ ଶ୍ରୀ ପ୍ୟାରୀମୋହନ ମହାପାତ୍ରଙ୍କୁ ପ୍ରଦାନ କରୁଛନ୍ତି ।

# ଅନୁସୂଚିତ ଜନଜାତି - ଏକ ଦୃଷ୍ଟିପାତ

୧. ୨୦୦୧ ଜନଗଣନା ଅନୁସାରେ ଓଡିଶାର ମୋଟ ଅନୁସୂଚିତ ଜନଜାତିଙ୍କର ସଂଖ୍ୟା ୮,୧୪୫,୦୮୧ ଯାହାକି ଓଡିଶାର, ମୋଟ ଜନସଂଖ୍ୟାର ଶତକଡା ୨୨.୧ ଭାଗ ଓ ଭାରତରେ ମୋଟ ଅନୁସୂଚିତ ଜନଜାତିର ଶତକଡା ୯.୭ ଭାଗ । ଏହି ଉଭୟ କ୍ରମରେ ଓଡିଶାର ସ୍ଥାନ ଅନ୍ୟ ରାଜ୍ୟମାନଙ୍କ ତୁଳନାରେ ଯଥାକ୍ରମେ ତୃତୀୟ ଓ ଏକଦଶାହ । ଅନୁସୂଚିତ ଜନଜାତିମାନଙ୍କର ଦଶନ୍ଧି ଅଭିବୃଦ୍ଧି ହାର ଶତକଡା ୧୫.୮ ଯାହାକି ରାଜ୍ୟର ଅଭିବୃଦ୍ଧିହାର (୧୬.୩)ଠାରୁ କମ୍ ରାଜ୍ୟରେ ମୋଟ ୬୨ ପ୍ରକାର ଜନଜାତି ବାସ କରିଥାଆନ୍ତି ।

୨. ରାଜ୍ୟର ଅନୁସୂଚିତ ଜନଜାତିମାନେ ସାଧାରଣତଃ ଗ୍ରାମାଞ୍ଚଳରେ ବାସ କରିଥାଆନ୍ତି ଯାହାର ଶତକଡା ୯୪.୫ ଭାଗ ଗ୍ରାମମାନଙ୍କରେ ରହିଥାଆନ୍ତି । ରାଜ୍ୟର ମାଲକାନଗିରି ଜିଲ୍ଲାରେ ଅନୁସୂଚିତ ଜନଜାତି ହାର ଅନ୍ୟ ଜିଲ୍ଲାମାନଙ୍କ ତୁଳନାରେ ସର୍ବାଧିକ (୫୭.୪) ଏବଂ ଏହି କ୍ରମରେ ମୟୂରଭଂଜ (୫୬.୬), ରାୟଗଡା (୫୫.୮) ଏବଂ ନବରଙ୍ଗପୁର (୫୫) ଯଥାକ୍ରମେ- ଦ୍ୱିତୀୟ, ତୃତୀୟ ଏବଂ ଚତୁର୍ଥ ସ୍ଥାନ ଅଧିକାର କରୁଛନ୍ତି । ପୁରୀ ଜିଲ୍ଲାରେ ଅନୁସୂଚିତ ଜନଜାତିମାନଙ୍କ ଶତକଡା ହାର ୦.୩ ଯାହାକି ସର୍ବନିମ୍ନ ।

**ଜନସଂଖ୍ୟା: ଆକାର ଓ ବିସ୍ତୃତି**

୩. ମୋଟ ୬୨ ପ୍ରକାର ଅନୁସୂଚିତ ଜନଜାତିମାନଙ୍କ ମଧ୍ୟରୁ କନ୍ଧମାନଙ୍କ ଜନସଂଖ୍ୟା ସବୁଠାରୁ ଅଧିକ, ୧୩,୯୫,୬୪୩ ଯାହାକି ରାଜ୍ୟର ମୋଟ ଅନୁସୂଚିତ ଜନଜାତିର ଶତକଡା ୧୭.୧ଭାଗ । ଗଣ୍ଡ ଜନଜାତିଙ୍କର ସଂଖ୍ୟା ଦ୍ୱିତୀୟ, ୭୬୨, ୧୦୪, ଯାହାର ଶତକଡା ହାର ୯.୬୧ ରାଜ୍ୟର ଛଅଟି ଜନଜାତି ଯଥା- ସାନ୍ତାଳ, କୋହ୍ଲ, ମୁଣ୍ଡା, ସଉରା, ଶବର ଏବଂ ଭୋତଡା, କନ୍ଧ ଏବଂ ଗଣ୍ଡ ସହ ମୋଟ ଜନଜାତିର ଶକକଡା ୬୪.୨ ପ୍ରତିଶତ ଅଟନ୍ତି, ଭୂୟାଁ, ଓରାଁ, ପରଜା ଓ କିସାନ ଜନଜାତିମାନଙ୍କର ଜନସଂଖ୍ୟା ୨୪୮, ୧୪୪ରୁ ୩୨୧, ୫୯୨ ମଧ୍ୟରେ ସେମାନେ ଏକତ୍ର ମୋଟ ଅନୁସୂଚିତ ଜନଜାତିର ୧୮.୧ ପ୍ରତିଶତ ସ୍ଥାନ ଅଧିକାର କରିଥାଆନ୍ତି । ସେହିପରି ପାଞ୍ଚଟି ଜନଜାତି ଯଥା- ଭୂମିଆ, ବିଂଝାଲ, କୋୟା, ଇତ୍ୟାଦି ଯେଉଁମାନଙ୍କ ଜନସଂଖ୍ୟା ୧୦୩,୫୦୩ଠାରୁ ୧୯୬, ୮୪୬ ମଧ୍ୟରେ ସୀମିତ ସେମାନେ ଏକତ୍ର ମୋଟ ଅନୁସୂଚିତ ଜନଜାତିର ଶତକଡା ୯ ଭାଗ ଗଠନ କରିଥାଆନ୍ତି । ଅବିଶିଷ୍ଟ ୪୪ ଜନଜାତି ଏବଂ ଆଦିମ ଜନଜାତିମାନଙ୍କ ସହ ରାଜ୍ୟର ମୋଟ ଜନଜାତିମାନଙ୍କ ଲୋକସଂଖ୍ୟାର ୮.୮ ପ୍ରତିଶତ । ଚେଞ୍ଚୁ, ମାଙ୍କିଡି, ଦେଶୁଆ, ଭୂମିଜ, ଘରା, ଥରୁଆ ପରି ଜନଜାତିମାନଙ୍କର ଜନସଂଖ୍ୟା ୫୦୦ରୁ ମଧ୍ୟ କମ୍ ।

୪. ଜିଲ୍ଲା ଅନୁଯାୟୀ ଅନୁସୂଚିତ ଜନଜାତିମାନଙ୍କ ମଧ୍ୟରୁ କନ୍ଧମାନଙ୍କ ଅନୁପାତ କନ୍ଧମାଳରେ ସର୍ବାଧିକ (୯୩.୩ ପ୍ରତିଶତ) ଏବଂ ଏହା ପଛକୁ ନୟାଗଡ (୭୬.୯ ପ୍ରତିଶତ), ବଉଦ (୭୬.୪ ପ୍ରତିଶତ), ରାୟଗଡା (୭୧.୧ ପ୍ରତିଶତ) ଗଣ୍ଡମାନେ ନବରଙ୍ଗପୁର ଜିଲ୍ଲାରେ ଅଧିକତଃ ରହୁଥିଲାବେଳେ ପଛକୁ ନୂଆପଡା ଜିଲ୍ଲାରେ ଦେଖାଯାଆନ୍ତି । ସେହିପରି ସାନ୍ତାଳ ଓ କୋହ୍ଲମାନେ ମୟୂରଭଂଜ ଜିଲ୍ଲାରେ ଦେଖାଯାଆନ୍ତି । ଚାରୋଟି ଜନଜାତି ଯଥା- ମୁଣ୍ଡା, ସଉରା, ଶବର ଏବଂ ଭୋତଡା ଜନଜାତି, ସୁନ୍ଦରଗଡ, ବରଗଡ, ଗଜପତି ଏବଂ ନବରଙ୍ଗପୁର ଜିଲ୍ଲାରେ ଯଥାକ୍ରମରେ ଅଧିକ ସଂଖ୍ୟାରେ ଦେଖାଯାଆନ୍ତି ।

**ପୁରୁଷ ଓ ସ୍ତ୍ରୀ ଅନୁପାତ**

୫. ରାଜ୍ୟର ମୋଟ ଜନଜାତିମାନଙ୍କର ଏହି ଅନୁପାତ ୧୦୦୩ ଯାହାକି ମହିଳାମାନଙ୍କ ଆଧିକ୍ୟ ପୁରୁଷମାନଙ୍କ ତୁଳନାକୁ ଦର୍ଶାଉଛି ଯାହାକି ରାଷ୍ଟ୍ରୀୟ ଅନୁପାତ (୯୭୮)ଠାରୁ ।

୬. ନିର୍ଦ୍ଧିଷ୍ଟ ଜନଜାତିମାନଙ୍କ ମଧ୍ୟରୁ କେବଳ ସାନ୍ତାଳମାନଙ୍କୁ ବାଦଦେଲେ ଅନ୍ୟ ସଂଖ୍ୟା ବହୁତ ଜନଜାତିମାନଙ୍କର ପୁରୁଷ ଓ ମହିଳା ଅନୁପାତ ରାଷ୍ଟ୍ରୀୟ ଅନୁପାତଠାରୁ ଅଧିକ ।

୭. ଜନଜାତିମାନଙ୍କ ମଧ୍ୟରେ ୦.୬ ବୟସ ପିଲାମାନଙ୍କ ଏହି ଅନୁପାତ ରାଷ୍ଟ୍ରୀୟ ଅନୁପାତଠାରୁ ସାମାନ୍ୟ ଅଧିକ। । ସଂଖ୍ୟା ବହୁଳ ଜନଜାତିମାନଙ୍କ ମଧ୍ୟରୁ ତିନୋଟି ଜନଜାତି ଯଥା- ସାନ୍ତାଳ, ସଉରା, କୋହ୍ଲ ବ୍ୟତୀତ ଅନ୍ୟମାନଙ୍କ ଅନୁପାତ ରାଷ୍ଟ୍ରୀୟ ଅନୁପାତଠାରୁ ଅଧିକ ।

**ସାରଣୀ - ୧ ପୁରୁଷ ମହିଳା ଅନୁପାତ**

| ବୟସ କାଳ | ସମସ୍ତ ଜନଜାତି (ଭାରତ) | ସମସ୍ତ ଜନଜାତି (ଓଡିଶା) | କନ୍ଧ | ଶବର | ସଉରା | ଗଣ୍ଡ | ଭୋତଡା | କୋହ୍ଲ | ମୁଣ୍ଡା | ସାନ୍ତାଳ |
|---|---|---|---|---|---|---|---|---|---|---|
| ସମସ୍ତ ବୟସ | ୯୭୮ | ୧୦୦୩ | ୧୦୨୭ | ୧୦୦୮ | ୧୦୦୭ | ୧୦୦୫ | ୯୯୩ | ୯୯୦ | ୯୮୨ | ୯୭୬ |
| ୦-୬ ବର୍ଷ | ୯୭୩ | ୯୭୯ | ୯୯୦ | ୯୮୨ | ୯୭୧ | ୯୮୦ | ୯୯୮ | ୯୭୩ | ୯୭୪ | ୯୫୫ |

**ସାକ୍ଷରତା ଓ ଶିକ୍ଷାଗତ ଯୋଗ୍ୟତା**

୮. ଅନୁସୂଚିତ ଜନଜାତିମାନଙ୍କର ସାମଗ୍ରିକ ସାକ୍ଷରତା ହାର, ଯାହାକି ୧୯୯୧ ଜନଗଣନା ଅନୁସାରେ ଶତକଡା ୨୨.୩ ପ୍ରତିଶତ ଥିଲା ବୃଦ୍ଧି ପାଇ ୨୦୦୧ ଜନଗଣନା ସମୟରେ ୩୭.୪ ହୋଇଛି । ଏହା ସତ୍ତ୍ୱେ ଏହା ରାଷ୍ଟ୍ରୀୟ ଜନଜାତି ସାକ୍ଷରତା ହାରଠାରୁ ଢେର କମ (୪୯.୧ ପ୍ରତିଶତ), ପୁରୁଷ ସାକ୍ଷରତା ହାର ୩୪.୪ ରୁ ୫୧.୫ ପ୍ରତିଶତ ଏବଂ ମହିଳା ସାକ୍ଷରତା ହାର ୧୯୯୧ ମସିହାର ୧୦.୨ ପ୍ରତିଶତରୁ ୨୦୦୧ ମସିହାରେ ୨୩.୪ ପ୍ରତିଶତ ହୋଇଛି ।

୯. ସଂଖ୍ୟା ବହୁଳ ଜନଜାତିମାନଙ୍କ ମଧ୍ୟରୁ ଗଣ୍ଡ ଜନଜାତିର ସାକ୍ଷରତା ହାର ସର୍ବାଧିକ (୪୭ ପ୍ରତିଶତ) । ସଉରା, ସାନ୍ତାଳ, ମୁଣ୍ଡା ଏବଂ ଶବର (୩୫.୪ ପ୍ରତିଶତ) ଇତ୍ୟାଦି ତା' ପଛକୁ ପଛ ଅଛନ୍ତି । ସହିପରି ଗଣ୍ଡ ଜନଜାତି ମହିଳା ସାକ୍ଷରତା ହାର ସର୍ବାଧିକ ଥିଲାବେଳେ ଭୋତଡା ଜନଜାତିର ହାର ସର୍ବନିମ୍ନ କୋହ୍ଲ ଓ କନ୍ଧ ଠିକ୍ ତାଠୁ ସାମାନ୍ୟ ଅଧିକ ।

**ସାରଣୀ -୨ ସାକ୍ଷରତା ହାର**

| ସାକ୍ଷରତା ହାର | ସମସ୍ତ ଜନତାତି (ରାଜ୍ୟ) | ଗଣ୍ଡ | ସଉରା | ସାନ୍ତାଳ | ମୁଣ୍ଡା | ଶବର | କନ୍ଧ | କୋହ୍ଲ | ଭୋତଡା |
|---|---|---|---|---|---|---|---|---|---|
| ମୋଟ ଜନସଂଖ୍ୟା | ୩୭.୪ | ୪୭.୦ | ୪୧.୧ | ୪୦.୫ | ୩୯.୭ | ୩୫.୪ | ୩୧.୯ | ୨୭.୧ | ୨୪.୩ |
| ମହିଳା | ୨୩.୪ | ୩୦.୮ | ୨୫.୭ | ୨୪.୭ | ୨୭.୬ | ୧୯.୯ | ୧୮.୦ | ୧୪.୮ | ୧୧.୧ |

୧୦. ସାକ୍ଷର ଜନଜାତିମାନଙ୍କ ମଧ୍ୟରୁ ଶତକଡା ୪୪.୭ ଭାଗ ମୁଖ୍ୟତଃ କୌଣସି ଶିକ୍ଷାଗତ ନଥାଇ ସାକ୍ଷର ଓ ନିମ୍ନ ପ୍ରାଥମିକ ସ୍ତରର । ପ୍ରାଇମେରୀ ଓ ମଧ୍ୟ ଇଂରାଜୀ ସ୍ତରର ସାକ୍ଷରଙ୍କ ହାର ଯଥାକ୍ରମେ ୨୮.୭ ପ୍ରତିଶତ ଓ ୧୩.୭ ପ୍ରତିଶତ । ସେହିପରି ମାଟ୍ରିକ / ଉଚ୍ଚ ମାଧ୍ୟମିକ / ଇଣ୍ଟର ମିଡିଏଟମାନଙ୍କର ଶତକଡା ହାର ମାତ୍ର ୧୧.୦ ଗ୍ରାଜୁଏଟ୍ ଏବଂ ତଦୂର୍ଦ୍ଧ ସାକ୍ଷରଙ୍କହାର ୧.୫ ଥିଲାବେଳେ ବୈଷୟିକ ଓ ଅଣ ବୈଷୟିକ ଡିପ୍ଲୋମାଧାରୀଙ୍କ ଶତକଡା ହାର ଅଧାରୁ କମ୍ ଅର୍ଥାତ ୦.୪ ପ୍ରତିଶତ ।

୧୧. ସଂଖ୍ୟା ବହୁଳ ଜନଜାତିମାନଙ୍କ ମଧ୍ୟରୁ ସାନ୍ତାଳମାନଙ୍କ ମଧ୍ୟରେ ସର୍ବାଧିକ ମାଟ୍ରିକ ପାସ୍ କରି ଥିଲାବେଳେ ଗଣ୍ଡ ଜନଜାତିମାନେ ଦ୍ୱିତୀୟ ସ୍ଥାନରେ ଅଛନ୍ତି ।

୧୨. ସମୁଦାୟ ଜନଜାତିମାନଙ୍କ ମଧ୍ୟରେ ଶିକ୍ଷାଗତ ଯୋଗ୍ୟତା ଶ୍ରେଣୀ ବିଭାଗକୁ ଅନୁଧ୍ୟାନ କଲେ ଦେଖାଯାଏ ପ୍ରାଇମେରୀ ପରେ ପାଠପଢା ଛାଡିବାର ଶତକଡା ହାର ସର୍ବାଧିକ କାରଣ, ମଧ୍ୟଇଂରାଜୀ ପରେ ଏହି ପାଠପଢା ଛାଡିବା ପ୍ରାୟ ଏହାର ଅର୍ଦ୍ଧେକ ହୋଇ ଯାଉଛି । ପୁନର୍ବାର ମାଧ୍ୟମିକ ଶିକ୍ଷାସ୍ତର ପରେ ଏହି ହାର ଆହୁରି ବେଶି ।

**ସାରଣୀ-୪ ସଂଖ୍ୟା ବହୁଳ ଜନଜାତିମାନଙ୍କ ମଧ୍ୟରେ ଶିକ୍ଷାଗତ ଯୋଗ୍ୟତାର ଶ୍ରେଣୀ ବିଭାଗ**

| ଅନୁସୂଚିତ ଜନଜାତିର ନାମ | କୌଣସି ଶିକ୍ଷାଗତ ଯୋଗ୍ୟତା ନଥାଇ ସାକ୍ଷର | ନିମ୍ନ ପ୍ରାଥମିକ | ସଂଖ୍ୟା ବହୁଳ ଜନଜାତିଙ୍କର ସିକ୍ଷାଗତ ଯୋଗ୍ୟତା | | | | |
|---|---|---|---|---|---|---|---|
| | | | ପ୍ରାଇମେରୀ | ମଧ୍ୟ ଇଂରାଜୀ | ମାଟ୍ରିକ/ ଉଚ୍ଚ ମାଧ୍ୟମିକ/ ଇଣ୍ଟର ମିଡିଏଟ୍ | ବୈଷୟିକ ଓ ଅଣ ବୈଷୟିକ ଡିପ୍ଲୋମା ଇତ୍ୟାଦି | ଗ୍ରାଜୁଏଟ୍ ଏବଂ ତଦୂର୍ଦ୍ଧ |
| ସମସ୍ତ ଜନଜାତି | ୪.୪ | ୪୦.୩ | ୨୮.୭ | ୧୩.୭ | ୧୧ | ୦.୪ | ୧.୫ |
| କନ୍ଧ | ୫.୮ | ୪୭.୭ | ୨୮.୨ | ୧୦.୪ | ୬.୯ | ୦.୨ | ୦.୮ |
| ଗଣ୍ଡ | ୫.୪ | ୪୦.୭ | ୨୯.୪ | ୧୨.୮ | ୧୦.୩ | ୦.୪ | ୧.୩ |
| ସାନ୍ତାଳ | ୨.୬ | ୩୪.୬ | ୨୭ | ୧୭.୭ | ୧୪.୮ | ୦.୬ | ୨.୬ |
| କୋହ୍ଲ | ୩.୭ | ୪୦ | ୨୭.୫ | ୧୬ | ୧୧.୧ | ୦.୪ | ୧.୪ |
| ମୁଣ୍ଡା | ୨.୭ | ୩୫.୭ | ୩୦.୮ | ୧୫.୪ | ୧୩.୩ | ୦.୫ | ୧.୬ |
| ସଉରା | ୪.୬ | ୪୩.୯ | ୩୦.୬ | ୧୧.୪ | ୮.୩ | ୦.୩ | ୦.୯ |
| ଶବର | ୫.୧ | ୪୬.୨ | ୨୮.୬ | ୧୧.୨ | ୭.୮ | ୦.୩ | ୦.୮ |
| ଭୋତଡା | ୯.୪ | ୪୭.୩ | ୨୭.୪ | ୯.୮ | ୫.୫ | ୦.୧ | ୦.୪ |

୧୩. ୫-୧୪ ବର୍ଷ ବୟସର ସମୁଦାୟ ଜନଜାତି ପିଲାମାନଙ୍କର ସଂଖ୍ୟା ୨୧.୪ ଲକ୍ଷ ଥିଲା ବେଳେ କେବଳ ୯.୮ ଲକ୍ଷ ପିଲା ସ୍କୁଲ ଯାଉଛନ୍ତି ଯାହାକି ମୋଟ ସଂଖ୍ୟାର ୪୫.୮ ପ୍ରତିଶତ ଏହି ବୟସର ୧୧.୬ ଲକ୍ଷ ପିଲା ସ୍କୁଲକୁ ଯାଉନାହାନ୍ତି ଯାହାକି ଏକ ଭୟାବହ ପରିସ୍ଥିତି ଅବସ୍ଥା । ସଂଖ୍ୟା ବହୁଳ ଜନଜାତିମାନଙ୍କ ମଧ୍ୟରୁ ଗଣ୍ଡ ଓ ସଉରା ଅର୍ଦ୍ଧାଧିକ ପିଲା ସ୍କୁଲକୁ ଯାଇଥିଲା ବେଳେ କନ୍ଧ, ଶବର ଓ ସାନ୍ତାଳମାନଙ୍କର ହାର ଶତକଡା ୪୦ରୁ ଅଧିକ ।

**କାର୍ଯ୍ୟରେ ଅଂଶଗ୍ରହଣ ହାର (WPR)**

**ସାରଣୀ-୪ ୫.୧୪ ବୟସର ପିଲାମାନଙ୍କର ମଧ୍ୟରେ ସ୍କୁଲଯାଉଥିବା ପିଲାମାନଙ୍କ ଶତକଡା ହାର**

| ବୟସ | ସମସ୍ତ ଜନଜାତି | କନ୍ଧ ଇତ୍ୟାଦି | ଗଣ୍ଡ ଇତ୍ୟାଦି | ସାନ୍ତାଳ | କୋହ୍ଲ | ମୁଣ୍ଡା ଇତ୍ୟାଦି | ସଉରା ଇତ୍ୟାଦି | ଶବର | ଭୋତଡା ଇତ୍ୟାଦି |
|---|---|---|---|---|---|---|---|---|---|
| ୫-୧୪ ବର୍ଷ | ୪୫.୮ | ୪୧.୭ | ୫୬.୧ | ୪୬.୫ | ୩୧.୬ | ୪୨.୨ | ୫୧.୮ | ୪୪.୮ | ୩୬.୮ |

୧୪. ଓଡିଶାରେ ଜନତାତିମାନଙ୍କ କାର୍ଯ୍ୟ ଅଂଶଗ୍ରହଣର ହାର ୪୯ ପ୍ରତିଶତ ଯାହାକି ସର୍ବଭାରତୀୟ ଜନଜାତିର ଏହି ହାର ସଂଗେ ପ୍ରାୟ ସମାନ (୪୯.୧) କାର୍ଯ୍ୟ ଅଂଶ ଗ୍ରହଣ ହାର ୧୯୯୧ ତୁଳନାରେ ସାମାନ୍ୟ କମିଯାଇଥିବାର (୦.୪ ପ୍ରତିଶତ) ଦେଖାଯାଏ । ପୁରୁଷମାନଙ୍କ କାର୍ଯ୍ୟ ଅଂଶ ଗ୍ରହଣ କରିବା ହାର ଏହି ସମୟ ମଧ୍ୟରେ ୫୮.୪ ପ୍ରତିଶତରୁ ୫୪.୮ ପ୍ରତିଶତକୁ କମି ଯାଇଥିଲାବେଳେ ମହିଳାମାନଙ୍କ ହାର (୪୩.୨ ପ୍ରତିଶତ) ପ୍ରାୟ ୩.୪ ପ୍ରତିଶତ ବଢି ଯାଇଛି । ସମୁଦାୟ କର୍ମୀମାନଙ୍କ ମଧ୍ୟରୁ ୫୭.୪ ପ୍ରତିଶତ ମୁଖ୍ୟକର୍ମୀ ଯାହାଙ୍କ ସର୍ବଭାରତୀୟ ହାର (୬୮.୯)ଠାରୁ ଢେର କମ ।

୧୫. ସଂଖ୍ୟା ବହୁଳ ଜନଜାତିଙ୍କ ମଧ୍ୟରୁ କନ୍ଧ, ଗଣ୍ଡ, ଶବର, ସଉରା ଏବଂ ଭୋତଡାମାନଙ୍କ କାର୍ଯ୍ୟ ଅଂଶ ଗ୍ରହଣ ହାର ସ୍ତରଠାରୁ ଏପରିକି ଜାତୀୟସ୍ତରଠାରୁ ମଧ୍ୟ ଅଧିକ ।

### କର୍ମୀମାନଙ୍କ ଶ୍ରେଣୀ ବିଭାଗ

୧୬. କର୍ମୀମାନଙ୍କ ମଧ୍ୟରେ ଅନୁପାତ କୃଷି ଶ୍ରମିକମାନଙ୍କ ଅନୁପାତ ସର୍ବାଧିକ (୪୬.୯ ପ୍ରତିଶତ) । ଏହି ଅନୁପାତ ଜାତୀୟସ୍ତରର ଅନୁପାତ (୩୬.୯ ପ୍ରତିଶତ)ଠାରୁ ମଧ୍ୟ ଅଧିକ । ଓଡିଶାରେ ଜନଜାତି କୃଷକମାନଙ୍କହାର ୩୩.୩ ପ୍ରତିଶତ ଯାହାକି ସର୍ବଭାରତୀୟ ଜନଜାତିମାନଙ୍କ ହାର (୪୪.୭ ପ୍ରତିଶତ)ଠାରୁ ମଧ୍ୟ କମ୍ । ଅନ୍ୟାନ୍ୟ କର୍ମୀମାନଙ୍କ ହାର ଶତକଡା ୧୫ ପ୍ରତିଶତ ଯାହାକି ସର୍ବ ଭାରତୀୟ ହାର (୧୬.୩ ପ୍ରତିଶତ) ସହିତ ପ୍ରାୟ ପାଖାପାଖି । ଘରୋଇ ଶିଳ୍ପରେ ନିୟୋଜିତ କର୍ମୀମାନଙ୍କ ହାର ଶତକଡା ୪.୮ ପ୍ରତିଶତ ଯାହାକି ଜାତୀୟସ୍ତରର ହାରଠାରୁ ୨.୭ ପ୍ରତିଶତ ଅଧିକ ।

୧୭. ସଂଖ୍ୟା ବହୁଳ ଜନଜାତି ଭୋତଡା, ଶବର ଏବଂ ସଉରା କର୍ମୀମାନଙ୍କ ମଧ୍ୟରୁ ଅର୍ଦ୍ଧାଧିକ କୃଷି ଶ୍ରମିକ ହୋଇଥିଲାବେଳେ ଉଭୟ କନ୍ଧ ଓ ଗଣ୍ଡ ଜନଜାତିମାନଙ୍କ ମଧ୍ୟରେ କୃଷକ କର୍ମୀମାନେ ସର୍ବାଧିକ ଥିବାର ଦେଖା ଯାଆନ୍ତି । ମୁଣ୍ଡା ଜନଜାତିମାନଙ୍କ ମଧ୍ୟରେ ଅନ୍ୟାନ୍ୟ କର୍ମୀମାନଙ୍କ ଅନୁପାତ ସର୍ବାଧିକ ।

### ଘରୋଇ ଶିଳ୍ପ କ୍ଷେତ୍ରରେ ସାନ୍ତାଳମାନଙ୍କ ଅନୁପାତ ସର୍ବାଧିକ

୧୮. ବୈବାହିକ ସ୍ଥିତି ସମ୍ପର୍କିତ ୨୦୦୧ ଜନଗଣନାର ତଥ୍ୟ ଅନୁସାରେ ଅବିବାହିତ ଲୋକଙ୍କର ଅନୁପାତ (୫୦.୯ ଶତକଡା) ବିବାହିତ ଲୋକଙ୍କର ଅନୁପାତଠାରୁ ଅଧିକ ଅଟେ (୪୩.୨ ଶତକଡା) ଏବଂ ବିଧବା ଲୋକ ଶତକଡା ୫.୫ ହୋଇଥିବା ବେଳେ ଛାଡପତ୍ର ପାଇଥିବା କିମ୍ବା ବିବାହ ବିଚ୍ଛେଦ ହୋଇଥିବା ଲୋକଙ୍କ ସଂଖ୍ୟା ଶତକଡା ୦.୫ ଅଟେ ।

**ସାରଣୀ-୫: ଋରୋଟି ଅର୍ଥନୈତିକ ଶ୍ରେଣୀରେ କର୍ମୀମାନଙ୍କର ବିଭାଜନ (ଶତକଡାରେ)**

| ଅର୍ଥନୈତିକ ଶ୍ରେଣୀ | ସମସ୍ତ ଜନଜାତି | କନ୍ଧ | ଗଣ୍ଡ | ସାନ୍ତାଳ | କୋହ୍ଲ | ମୁଣ୍ଡା | ସଉରା | ଶବର | ଭୋତଡା |
|---|---|---|---|---|---|---|---|---|---|
| କୃଷକ | ୩୩.୩ | ୩୯.୧ | ୩୯.୧ | ୩୨.୩ | ୨୫.୮ | ୨୩.୪ | ୨୯.୬ | ୨୭.୫ | ୩୨.୬ |
| କୃଷି ଶ୍ରମିକ | ୪୬.୯ | ୪୬.୮ | ୪୬.୬ | ୪୫.୧ | ୪୭.୬ | ୪୧.୭ | ୪୫.୩ | ୫୫.୩ | ୫୮.୨ |
| ଘରୋଇ ଶିଳ୍ପ ଶ୍ରମିକ | ୪.୮ | ୩.୬ | ୩.୩ | ୯.୩ | ୭.୯ | ୫.୩ | ୨.୮ | ୧.୪ | ୦.୭ |
| ଶ୍ରମିକ | ୧୫ | ୧୦.୫ | ୧୧ | ୧୩.୩ | ୧୮.୮ | ୨୯.୫ | ୧୩.୩ | ୧୫.୮ | ୮.୬ |

୧୯. ଆଇନ ଦ୍ୱାରା ସ୍ଥିର କରାଯାଇଥିବା ବିବାହ ବୟସ (ପୁଅ ୨୧ ବର୍ଷ, ଝିଅ ୧୮ ବର୍ଷ)ଠାରୁ କମ୍ ବୟସର ବିବାହ କରିବା ଓଡିଶାର ଅନୁସୂଚିତ ଜନଜାତିମାନଙ୍କ ମଧରେ ଖୁବ୍ କମ୍ ଅଟେ । ୧୮ ବର୍ଷ ବୟସଠାରୁ କମ୍ ବୟସରେ ବିବାହ କରୁଥିବା ଝିଅମାନଙ୍କର ଅନୁପାତ (୧.୬ ଶତକଡା) ଏବଂ ୨୧ବର୍ଷ ବୟସଠାରୁ କମ୍ ବୟସରେ ବିବାହ କରୁଥିବା ପୁଅମାନଙ୍କର ଅନୁପାତ (୧.୯ ଶତକଡା), ଜାତୀୟସ୍ତରର ଜନଜାତିଙ୍କ ଅନୁପାତଠାରୁ କମ୍ ଅଟେ (ପୁଅ ୨.୮ ଶତକଡା, ଏବଂ ଝିଅ ୨.୧ ଶତକଡା) ।

୨୦. ଓଡିଶାର ଜଣେ ଜନଜାତି ମହିଳା (ବୟସ ୪୫-୪୯ବର୍ଷ) ହାରାହାରି ୪ଟି ସନ୍ତାନ ଜନ୍ମ କରିଥାଏ, ଯାହାକି ଜାତୀୟସ୍ତରର ଜଣେ ଜନଜାତି ମହିଳା ଜନ୍ମ କରୁଥିବା ହାରାହାରି ସନ୍ତାନ ସଂଖ୍ୟା ସହିତ ପ୍ରାୟ ସମାନ ଅଟେ ।

### ଧର୍ମ:

୨୧. ରାଜ୍ୟବାସୀଙ୍କର ମୁଖ୍ୟଧର୍ମୀ ହେଲା ହିନ୍ଦୁ (୯୪.୪ ଶତକଡା) । ଏଠାରେ ଥିବା ଜନଜାତିମାନଙ୍କ ମଧରୁ ୮୮.୨ ଶତକଡା ହିନ୍ଦୁ, ୭.୪ ଶତକଡା ଖ୍ରୀଷ୍ଟିୟାନ ଏବଂ ଅନ୍ୟାନ୍ୟ ଧର୍ମର ଜନଜାତିଙ୍କ ସଂଖ୍ୟା ଶତକଡା ୪.୨ ଅଟେ । ଓଡିଶାରୁ ମୁସଲିମ୍ ଜନଜାତିଙ୍କ ସଂଖ୍ୟା ୧୩,୭୮୨ ଅଟେ ଯାହାକି ଅତି ନଗଣ୍ୟ (୦.୨ ଶତକଡା) ଏବଂ ଶିଖ୍ ଧର୍ମବଲମ୍ବୀ ଜନଜାତିଙ୍କ ସଂଖ୍ୟା ମାତ୍ର ୨୫୧ ଅଟେ ।

# ୨୦୦୧ ଜନଗଣନାରେ ଓଡ଼ିଶାର ଅନୁସୂଚିତ ଜନଜାତିମାନଙ୍କ ସ୍ଥିତି

*ଡକ୍ଟର ଅଭୟ ନାରାୟଣ ନାୟକ*

**ଓ**ଡ଼ିଶାରେ ୬୨ ପ୍ରକାର ଅନୁସୂଚିତ ଜନଜାତି ରହିଛନ୍ତି। ଯେଉଁମାନଙ୍କର ସଂପ୍ରଦାୟ ଅନୁଯାୟୀ ଜନସଂଖ୍ୟା, ୨୦୦୧ ଜନଗଣନା ଅନୁସାରେ ୨୦୦୭ ମସିହାରେ ପ୍ରକାଶ ପାଇଛି। ଏହି ଜନଜାତିମାନେ ଓଡ଼ିଶାରେ ଆଦିବାସୀ, ବନବାସୀ ଏବଂ ଗିରିଜନ ବୋଲି ବିଦିତ। ଉତ୍କଳୀୟ ପରମ୍ପରା ଏବଂ ଜଗନ୍ନାଥ ସଂସ୍କୃତିରେ ଏମାନେ ଓତଃପ୍ରୋତ ଭାବରେ ଜଡ଼ିତ ଥିବାର ଜଣାଯାଏ। ଓଡ଼ିଶାର ଶବରମାନେ ମହାପ୍ରଭୁ ଜଗନ୍ନାଥଙ୍କର ଆଦ୍ୟ ଉପାସକ। ତେଣୁ ଓଡ଼ିଶାର ସଂସ୍କୃତିରେ ଏହି ଆଦିବାସୀମାନଙ୍କ ପ୍ରଭାବ ଏବେ ମଧ୍ୟ ସ୍ପଷ୍ଟଭାବରେ ପ୍ରତିଫଳିତ ହୋଇଥିବାର ପରିଲକ୍ଷିତ ହୁଏ। ଏହି ୬୨ଟି ଅନୁସୂଚିତ ଜନଜାତି ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବାସ କରୁଛନ୍ତି। କିନ୍ତୁ କେତେକ ନିର୍ଦ୍ଦିଷ୍ଟ ଜନଜାତି ଓଡ଼ିଶାର ବିଭିନ୍ନ ଜିଲ୍ଲା ମଧ୍ୟରୁ କେତେକ ନିର୍ଦ୍ଦିଷ୍ଟ ଜିଲ୍ଲାରେ ବହୁଳ ଭାବରେ ଦୃଷ୍ଟିଗୋଚର ହୋଇଥାନ୍ତି। ୬୨ଟି ଜନଜାତି ମଧ୍ୟରୁ କନ୍ଧ, ଗଣ୍ଡ ଏବଂ ସାନ୍ତାଳ ଜନଜାତି ଓଡ଼ିଶାର ଜନସଂଖ୍ୟା ହିସାବରେ ଅନ୍ୟ ଜନଜାତିମାନଙ୍କ ମଧ୍ୟରେ ଆଗୁଆ ଥିବାର ଜଣାଯାଏ। ଅନ୍ୟ କେତେକ ଜନଜାତି ଯେମିତି ବିର୍‌ହୋର୍, ମାଙ୍କଡ଼ିଆ, ଚେଞ୍ଚୁ ଏବଂ ମାଙ୍କିଡ଼ି ଏମାନଙ୍କ ସଂଖ୍ୟା ଅନ୍ୟ ଜନଜାତିମାନଙ୍କ ତୁଳନାରେ ବହୁତ ଅଳ୍ପ ଥିବାର ଦୃଷ୍ଟିଗୋଚର ହୁଏ। ୬୨ଟି ଅନୁସୂଚିତ ଜନଜାତି ମଧ୍ୟରୁ ୮ଟି ଜନଜାତି 'ପ୍ରିମିଟିଭ ଟ୍ରାଇବାଲ ଗ୍ରୁପ୍' ବା 'ପୁରାତନ ଜନଜାତୀୟ ଗୋଷ୍ଠୀ' ଭାବରେ ଭାରତ ସରକାରଙ୍କ ଦ୍ୱାରା ଚିହ୍ନିତ ହୋଇଛନ୍ତି। ଏମାନେ ହେଲେ ଜୁଆଙ୍ଗ, ବଣ୍ଡୋପରଜା, ଲୋଧା, ଦିଦାୟୀ, ମାଙ୍କଡ଼ିଆ, ବିରହୋର୍, ଖଡ଼ିଆ ଏବଂ ସଉରା। ଭାରତରେ ଥିବା ବିଭିନ୍ନ ଜନଜାତି ମଧ୍ୟରୁ ଭାରତ ସରକାର ୭୫ଟି ଜନଜାତୀୟ ଗୋଷ୍ଠୀକୁ ସାକ୍ଷରତା, ଜନସଂଖ୍ୟାର ବୃଦ୍ଧିହାର, ବୈଷୟିକ ଜ୍ଞାନ କୌଶଳ ପ୍ରଭୃତି ବିଭିନ୍ନ ପରିମାପକକୁ ଆଧାର କରି 'ପ୍ରିମିଟିଭ ଟ୍ରାଇବାଲ ଗ୍ରୁପ' ବା 'ପୁରାତନ ଜନଜାତୀୟ ଗୋଷ୍ଠୀ' ଭାବରେ ଚିହ୍ନିତ କରିଛନ୍ତି। ଓଡ଼ିଶାରେ ଚିହ୍ନିତ ଏଭଳି ସଂଖ୍ୟା ୧୩। ଏମାନେ ହେଲେ ମାଙ୍କଡିଆ, ବିର୍‌ହୋର୍, ଜୁଆଙ୍ଗ, ସଉରା, ଲାଞ୍ଜିଆ ସଉରା, ଲୋଧା, ଦିଦାୟୀ, ବଣ୍ଡୋପରଜା, ଖଡ଼ିଆ, ଚୁକ୍‌ଟିଆ ଭୁଞ୍ଜିଆ, ପାଉଡି ଭୂୟାଁ, କୁଟିଆ କନ୍ଧ ଓ ଡ଼ଙ୍ଗରିଆ କନ୍ଧ। ଏମାନଙ୍କ ବିକାଶ ସକାଶେ ସରକାର ବିଭିନ୍ନ ଉନ୍ନୟନ ପ୍ରକଳ୍ପ ହାତକୁ ନେଇଛନ୍ତି। କିନ୍ତୁ ଦୁଃଖର କଥା, ଏହି ଜନଜାତିମାନଙ୍କ ମଧ୍ୟରୁ କେତେକ ଭାରତ ସରକାରଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ନୋଟିଫାଏଡ୍ ଟ୍ରାଇବାଲ ଲିଷ୍ଟରେ ନାହାନ୍ତି। ଓଡ଼ିଶାର ୧୩ଟି ପୁରାତନ ଜନଜାତି ମଧ୍ୟରେ କେବଳମାତ୍ର ୮ଟି ଜନଜାତି ଏହି ନୋଟିଫାଏଡ୍ ଟ୍ରାଇବାଲ୍ ଲିଷ୍ଟରେ ଅନ୍ତର୍ଭୁକ୍ତ ଅଟନ୍ତି ଏବଂ ଅବଶିଷ୍ଟ ପାଞ୍ଚଟି ଜନଜାତି କୌଣସି ନା କୌଣସି ବୃହତ ଜନଜାତୀୟ ସଂପ୍ରଦାୟରେ ଅନ୍ତର୍ଭୁକ୍ତ ହୋଇଛନ୍ତି ଏବଂ ଖଡ଼ିଆ ଓ ସଉରା ଜନଜାତିର ସଂଖ୍ୟା ସ୍ୱତନ୍ତ୍ର ଭାବରେ ପ୍ରକାଶିତ ହୋଇନାହିଁ ପରନ୍ତୁ ଖଡ଼ିଆ ଇତ୍ୟାଦି ଏବଂ ସଉରା ପ୍ରଭୃତି ଭାବରେ ପ୍ରକାଶିତ ହୋଇଛି। ପାଞ୍ଚଟି ଜନଜାତୀୟ ଗୋଷ୍ଠୀଙ୍କର କୌଣସି ପୃଥକ୍ ଜନଗଣନା କରାଯାଇନାହିଁ। ଭାରତ ସରକାରଙ୍କ ଗୃହ ମନ୍ତ୍ରଣାଳୟ ଅଧୀନସ୍ଥ ଜନଗଣନା ବିଭାଗ ଏହି ଅବଶିଷ୍ଟ ପାଞ୍ଚଟି ପୁରାତନ ଜନଜାତି ଗୋଷ୍ଠୀର ଜନସଂଖ୍ୟା ପ୍ରକାଶ କରୁନାହିଁ। ଏଣୁ ବିକାଶ ପରିପ୍ରେକ୍ଷୀରେ ଏହି ଗୋଷ୍ଠୀସବୁ ବହୁତ ପଛୁଆ ଥିବାରୁ ଏମାନଙ୍କ ଜନସଂଖ୍ୟା ଓ ଜନସଂଖ୍ୟା ଆଧାରିତ ବିଭିନ୍ନ ତଥ୍ୟ ପ୍ରକାଶ କରିବାକୁ ସରକାର ଦୃଷ୍ଟିଦେବା ବିଧେୟ।

ପ୍ରକାଶ ପାଇଥିବା ମୋଟ ୬୨ଟି ଜନଜାତିର କଥା ବିଚାର କଲେ ଅନେକ ଦୃଷ୍ଟି ଆକର୍ଷଣକାରୀ ତଥ୍ୟ ମିଳିଥାଏ। ୨୦୦୧ ଜନଗଣନା ଅନୁଯାୟୀ ପ୍ରକାଶ ପାଇଥିବା ବିଭିନ୍ନ ଜନଜାତି ମଧ୍ୟରେ ସଂଖ୍ୟାତ୍ମକ ଦୃଷ୍ଟିରୁ କନ୍ଧ, ଗଣ୍ଡ, ସାନ୍ତାଳ, କୋହ୍ଲ, ମୁଣ୍ଡା, ସଉରା, ଶବର, ଭୋତଡ଼ା, କିସାନ୍, ପରଜା, ଓରାନ୍, ଭୂୟାଁ, ଭୂମିଜ, ବାଥୁଡ଼ି, ଖଡିଆ, କୋୟା, ବିନଝାଲ, ଭୂମିୟା, ସୌନ୍ତି ଓ ଗଦବା ଅନ୍ୟତମ। ଏହି ଜନଜାତିମାନଙ୍କ ମଧ୍ୟରେ ଉକ୍ତ ଜନଜାତିର ବିଭିନ୍ନ ଗୋଷ୍ଠୀ ଅନ୍ତର୍ଭୁକ୍ତ। ଯେମିତି କନ୍ଧ ମଧ୍ୟରେ ଡ଼ଙ୍ଗରିଆ କନ୍ଧ,

କୁଟିଆ କନ୍ଧ, ଦେଶିଆ କନ୍ଧ ଅନ୍ତର୍ଭୁକ୍ତ ଅଟନ୍ତି ଠିକ୍ ସେମିତି ବିଭିନ୍ନ ଜନଜାତିର ଉପଗୋଷ୍ଠୀମାନଙ୍କୁ ସାମିଲ କରାଯାଇ ମୁଣ୍ଡା, ସଉରା, ଗଣ୍ଡ, ଭୋତଡ଼ା, ଭୂୟାଁ, ଖଡ଼ିଆ ପ୍ରଭୃତି ଜନଜାତିର ସମଷ୍ଟିଗତ ପରିସଂଖ୍ୟାନ ପ୍ରକାଶ ପାଇଛି। ଓଡ଼ିଶାର ୬୨ଟି ଜନଜାତିର ସଂଖ୍ୟା ହେଉଛି ୮,୧୪୫,୦୮୧ ଏବଂ ମୋଟ ଜନସଂଖ୍ୟାର ଏମାନଙ୍କ ସଂଖ୍ୟା ହେଉଛି ୨୨.୧୩ ଶତାଂଶ। ଏମାନଙ୍କ ମଧ୍ୟରେ ପୁରୁଷ ସଂଖ୍ୟା ୪,୦୬୬,୭୮୩ ରହିଥିବା ସ୍ଥଳେ ମହିଳା ସଂଖ୍ୟା ହେଉଛି ୪,୦୭୮,୨୯୮। ଓଡ଼ିଶାରେ ସାକ୍ଷରତା ହାର ୬୩.୦୮ ଶତାଂଶ ଥିବାବେଳେ ଅନୁସୂଚିତ ଜନଜାତିମାନଙ୍କର ସାକ୍ଷରତା ହାର ହେଉଛି ୩୭.୪ ଶତକଡ଼ା। ଓଡ଼ିଶାରେ ମହିଳାମାନଙ୍କ ସାକ୍ଷରତା ହାର ଶତକଡ଼ା ୫୦.୫୧ ଭାଗ ଥିବା ସ୍ଥଳେ ଆଦିବାସୀ ମହିଳା ସାକ୍ଷରତା ହାର ୨୩.୪ ଶତକଡ଼ା ଥିବାର ପ୍ରକାଶ ପାଇଛି।

ଯଦି ଏହି ଜନଜାତିମାନଙ୍କ ଭୌଗଳିକ ସ୍ଥିତିକୁ ବିଚାରକୁ ନିଆଯାଏ, ତେବେ ସଂଖ୍ୟାତ୍ମକ ଦୃଷ୍ଟିକୋଣରୁ ବହୁଳତା ଅଧିକାର କରିଥିବା ପ୍ରଥମ ଦଶଟି ଜନଜାତିଙ୍କ ସ୍ଥିତି ବିବିଧତାର ପରିଚୟ ଦିଏ। କନ୍ଧମାନଙ୍କ ସଂଖ୍ୟା ଏହି ଜନଗଣନାରେ ୧୩୯୫,୬୪୩ ରହିଥିବା ସମୟରେ ଏମାନେ କନ୍ଧମାଳ, କୋରାପୁଟ ଏବଂ ବଲାଙ୍ଗିର ଜିଲ୍ଲାରେ ବହୁଳ ଭାବରେ ବସବାସ କରୁଛନ୍ତି। ଏମାନଙ୍କ ସଂଖ୍ୟା ମୟୂରଭଞ୍ଜ, ବାଲେଶ୍ୱର, ଭଦ୍ରକ, କେନ୍ଦ୍ରାପଡ଼ା, ଜଗତସିଂହପୁର, ଯାଜପୁର ଏବଂ ପୁରୀ ପ୍ରଭୃତି ଜିଲ୍ଲାରେ ଏକ ହଜାରରୁ କମ୍ଥିବାର ଜଣାଯାଏ। ସେହିପରି ଗଣ୍ଡମାନଙ୍କ ସଂଖ୍ୟା ୭୮୨,୧୦୪ ଥିବାବେଳେ ଏମାନେ ମୁଖ୍ୟତଃ ନବରଙ୍ଗପୁର, ନୂଆପଡ଼ା ଓ କଳାହାଣ୍ଡି ଜିଲ୍ଲାରେ ବହୁଳ ଭାବରେ ବସବାସ କରୁଛନ୍ତି। ସଂଖ୍ୟାତ୍ମକ ଦୃଷ୍ଟିରୁ ସାନ୍ତାଳମାନେ ହେଉଛନ୍ତି ଏକ ଆଗୁଆ ଜନଜାତି। ଏମାନଙ୍କ ସଂଖ୍ୟା ଏହି ଜନଗଣନାରେ ୭୭୭,୨୦୪ ରହିଥିବା ବେଳେ ଏମାନେ ମୁଖ୍ୟତଃ ମୟୂରଭଞ୍ଜ ଏବଂ ବାଲେଶ୍ୱର ଜିଲ୍ଲାରେ ବସବାସ କରୁଛନ୍ତି। ଜନସଂଖ୍ୟା ଦୃଷ୍ଟିରୁ କୋଲ୍ହମାନେ ଓଡ଼ିଶାରେ ଚତୁର୍ଥ ସ୍ଥାନରେ ଥିବା ସ୍ଥଳେ ଏମାନଙ୍କ ସଂଖ୍ୟା ହେଉଛି ୪୯୯,୧୧୦। ଏହି ଜନଜାତି ମୁଖ୍ୟତଃ ମୟୂରଭଞ୍ଜ ଏବଂ କେନ୍ଦୁଝର ଜିଲ୍ଲାରେ ପରିଲକ୍ଷିତ ହୋଇଛନ୍ତି। ଅନ୍ୟ ଜନଜାତି ମଧ୍ୟରେ ଆଗୁଆ ଥିବା ଜନଜାତି ହେଉଛନ୍ତି ମୁଣ୍ଡା (୪୮୦,୨୫୨), ସଉରା (୪୭୩,୨୩୩), ଶବର (୪୪୨,୫୩୭), ଭୋତଡ଼ା (୩୭୫,୮୪୫), କିସାନ (୩୨୧,୫୯୨) ଓ ପରଜା (୩୧୭,୩୦୧)। ଆଦିବାସୀମାନେ ମୁଖ୍ୟତଃ ଜଙ୍ଗଲ ଉପରେ ନିର୍ଭରଶୀଳ ଥିବାରୁ ଉପକୂଳବର୍ତ୍ତୀ ଓଡ଼ିଶାରେ ଏମାନଙ୍କ ସଂଖ୍ୟା ଆପାତତଃ କମ୍ଥିବାର ଦୃଷ୍ଟିଗୋଚର ହେଉଥିବା ସ୍ଥଳେ ୨୦୦୧ ଜନଗଣନାରେ ଏମାନେ ଜୀବିକା ନିର୍ବାହ ସକାଶେ ଆସୁଥିବାରୁ ଅଳ୍ପ ବହୁତ ସଂଖ୍ୟାରେ ଓଡ଼ିଶାର ସମସ୍ତ ଜିଲ୍ଲାରେ ଦୃଷ୍ଟିଗୋଚର ହେଉଛନ୍ତି। ତଥାପି ଉପକୂଳବର୍ତ୍ତୀ ଓଡ଼ିଶାରେ କେତେକ ନିର୍ଦ୍ଦିଷ୍ଟ ଜନଜାତିକୁ ବାଦ୍‌ଦେଲେ ଏମାନଙ୍କ ସଂଖ୍ୟା ଦୃଷ୍ଟାନ୍ତମୂଳକ ନୁହେଁ।

ଓଡ଼ିଶାରେ ଆଦିବାସୀମାନଙ୍କ ସାକ୍ଷରତା ହାର ୩୭.୪% ରହିଥିବା ସ୍ଥଳେ ସଂଖ୍ୟାତ୍ମକ ଦୃଷ୍ଟିରୁ ଆଗୁଆଥିବା ଜନଜାତିମାନଙ୍କ ସାକ୍ଷରତା ହାର ହେଉଛି କନ୍ଧ (୩୧.୯%), ଗଣ୍ଡ (୪୭%), ସାନ୍ତାଳ (୪୦.୫%), କୋଲ୍ହ (୨୫.୧%), ମୁଣ୍ଡା (୩୯.୭%), ସଉରା (୪୧.୧%), ଶବର (୩୫.୪%), ଭୋତଡ଼ା (୨୪.୩%), କିସାନ୍ (୫୦.୨%), ପରଜା (୧୮%), ଓରାନ୍ (୫୪.୨%), ଭୂୟାଁ (୫୦.୯%), ଭୂମିଜ (୩୬.୫%), ବାଥୁଡ଼ି (୪୯.୬%), ଖଡ଼ିଆ (୪୫.୨%), କୋୟା (୧୧.୭%), ବିନ୍‌ଝାଲ (୪୧.୫%), ଭୂମିଆ (୨୦.୦%), ସୋନ୍ତି (୪୪.୪%) ଏବଂ ଗଦବା (୩୩%)। ରାଜ୍ୟସ୍ତରରେ ଆଦିବାସୀ ମହିଳାମାନଙ୍କ ସାକ୍ଷରତା ହାର ୨୩.୪% ରହିଥିବା ସ୍ଥଳେ ଗଣ୍ଡ, ସାନ୍ତାଳ, ମୁଣ୍ଡା, ସଉରା, କିସାନ, ଓରାନ୍, ଭୂୟା, ବାଥୁଡ଼ି, ଖଡ଼ିଆ, ବିନ୍‌ଝାଲ୍ ଏବଂ ସୌନ୍ତି ପ୍ରଭୃତି ସଂଖ୍ୟାତ୍ମକ ଭାବରେ ଆଗୁଆ ଥିବା ଜନଜାତିମାନଙ୍କର ମହିଳା ସାକ୍ଷରତା ହାର ରାଜ୍ୟର ଆଦିବାସୀ ମହିଳା ସାକ୍ଷରତା ହାରଠାରୁ ଅଧିକ ଥିବାର ଅନୁଧ୍ୟାନ କରାଯାଏ। ଅପର ପକ୍ଷରେ ରାଜ୍ୟର ସାକ୍ଷରତା ହାରଠାରୁ ନିମ୍ନରେ ଥିବା ଏବଂ ସଂଖ୍ୟାତ୍ମକ ଦୃଷ୍ଟିକୋଣରୁ ଓଡ଼ିଶାର ୨୦ଟି ଜନଜାତି ମଧ୍ୟରେ ସ୍ଥାନ ହାସଲ କରୁଥିବା ଜନଜାତିମାନେ ହେଲେ କନ୍ଧ, କୋଲ୍ହ, ଶବର, ଭୋତଡ଼ା, ପରଜା, ଭୂମିଜ, ଖଡିଆ, ବିନ୍‌ଝାଲ୍ ଏବଂ ଗଦବା ଅନ୍ୟତମ। ସଂଖ୍ୟାତ୍ମକ ଦୃଷ୍ଟିରୁ ଅଗ୍ରସ୍ଥାନ ଅଧିକାର କରିଥିବା ଦଶଟି ଜନଜାତି ମଧ୍ୟରେ ମେଟ୍ରିକ୍‌ରୁ ଉର୍ଦ୍ଧ୍ୱ ଶିକ୍ଷାଲାଭ କରିଥିବା ବ୍ୟକ୍ତିମାନଙ୍କ ସଂଖ୍ୟା ୫ ଶତାଂଶରୁ ନିମ୍ନରେ ଥିବା ପରିଲକ୍ଷିତ ହେଉଛି। ଏହି ସ୍ଥାନରେ ଥିବା ମହିଳାମାନଙ୍କ ସଂଖ୍ୟା ଆହୁରି ନୈରାଶ୍ୟଜନକ। ଏପରିକି ଏହି ଦଶଟି ଜନଜାତିର ମହିଳାମାନଙ୍କ ମଧ୍ୟରେ ମେଟ୍ରିକ୍ ଶିକ୍ଷାଲାଭ କରିଥିବା ମହିଳାମାନଙ୍କ ସଂଖ୍ୟା ୩ ଶତାଂଶରୁ କମ୍। ସରକାରଙ୍କ ବିଭିନ୍ନ ଯୋଜନା ଏବଂ ମହିଳା ସଶକ୍ତିକରଣ ଭଳି ସମ୍ବେଦନଶୀଳ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରି ସଫଳ ରୂପଦେବା ସକାଶେ ଏଭଳି ସ୍ଥିତି ଏକ ଆହ୍ୱାନ ଭାବରେ ବିଚାର କରାଯାଇପାରେ।

ଅନ୍ୟପକ୍ଷରେ ୨୦୦୧ ଜନଗଣନା ଅନୁସାରେ ରାଜ୍ୟର ୧୦୦୦ ପୁରୁଷ ପିଛା ସ୍ତ୍ରୀ ସଂଖ୍ୟାର ହାର ୯୭୨ ରହିଥିବା ସ୍ଥଳେ ସମସ୍ତ ଆଦିବାସୀଙ୍କୁ ବିଚାରକୁ ନେଲେ ଏହା ହେଉଛି ୧୦୦୩। କିନ୍ତୁ ସଂଖ୍ୟାବହୁଳ ଜନଜାତି ମଧ୍ୟରେ ଏହା ୯୭୬ (ସାନ୍ତାଳ), ୯୯୦ (କୋଲ୍ହ), ୯୮୨ (ମୁଣ୍ଡା), ୯୯୩ (ଭୋତଡ଼ା, କିସାନ୍), ୯୯୮ (ଭୂୟା), ୯୮୪ (ଭୂମିଜ), ୯୮୧ (ବିନ୍‌ଝାଲ) ରହିଥିବାର ଜଣାଯାଏ। ଅପେକ୍ଷାକୃତ ଭାବରେ ଏହି ହାର ସଂଖ୍ୟାବହୁଳ ଜନଜାତି ଯଥା କନ୍ଧ (୧୦୨୭), ପରଜା (୧୦୩୯), ଖଡ଼ିଆ (୧୦୧୫), ଭୂମିଆ (୧୦୨୦), ଗଦବା (୧୦୧୧)ମାନଙ୍କ ମଧ୍ୟରେ ସନ୍ତୋଷଜନକ ରହିଥିବାର ମନେକରାଯାଏ। ଏକବର୍ଷରୁ ୬ ବର୍ଷ ମଧ୍ୟରେ ରହିଥିବା ଜନସଂଖ୍ୟାରେ ଏହି ଜନଜାତିମାନଙ୍କ ମଧ୍ୟରେ କେବଳ ପରଜା (୧୦୦୬) ଏବଂ ଭୂମିଆ (୧୦୦୦) ଜନଜାତିରେ ଏହି ହାର ୧୦୦୦ରୁ ଊର୍ଦ୍ଧ୍ୱରେ ରହିଛି। ଏହି ଦୃଷ୍ଟିରୁ ଜନଜାତିମାନଙ୍କର ଜନସଂଖ୍ୟାରେ ଭବିଷ୍ୟତରେ ରହିବାକୁଥିବା ସ୍ତ୍ରୀ ପୁରୁଷ ଲିଙ୍ଗହାରକୁ ବିଶ୍ଳେଷଣ କରାଯାଇ ସତର୍କ ରହିବାକୁ ସଚେତ ହେବାର ଆବଶ୍ୟକତା ରହିଛି। ଯେହେତୁ ଏହି ହାର ସ୍ତ୍ରୀମାନଙ୍କ ପାଇଁ ଆଗରୁ ଏହି ଗୋଷ୍ଠୀମାନଙ୍କ କ୍ଷେତ୍ରରେ ଭଲ ଥିବା ବେଳେ ଏବେ ତାହା କ୍ରମିକ ଭାବରେ କମି ଯାଉଛି କିଛି ବିଶେଷ ଜନଜାତିଙ୍କ କ୍ଷେତ୍ରରେ।

ଓଡ଼ିଶାର ୮ଟି ପୁରାତନ ଜନଜାତି ଯେଉଁମାନେକି ୬୨ଟି ଜନଜାତି ତାଲିକାରେ ଅନ୍ତର୍ଭୁକ୍ତ ହୋଇଥିବା ଯୋଗୁଁ ସେମାନଙ୍କର ତଥ୍ୟ ପ୍ରକାଶ ପାଇଛି, ସେମାନଙ୍କ ସଂଖ୍ୟାହେଲା ବିର୍‌ହୋର୍ (୭୦୨), ବଣ୍ଡୋପରଜା (୯,୩୭୮), ମାଙ୍କଡ଼ିଆ (୧,୦୫୦), ଲୋଧା (୮,୯୦୫), ଦିଦାୟୀ (୭,୩୭୧) ଏବଂ ଜୁଆଙ୍ଗ (୪୧,୩୩୯), ଖଡ଼ିଆ (୧୮୮,୩୩୧) ପ୍ରଭୃତି ଏବଂ ସଉରା (୪୭୩,୨୩୩) ପ୍ରଭୃତି । ଏହି ଜନଜାତିମାନେ ଓଡ଼ିଶାର ସମସ୍ତ ଜିଲ୍ଲାରେ ଥିବାର ଜଣାଯାଏ କିନ୍ତୁ ଏମାନେ ବଉଦ, କନ୍ଧମାଳ ଏବଂ ଭଦ୍ରକ ଜିଲ୍ଲାରେ ଜଣେ ସୁଦ୍ଧା ଥିବାର ଜନସଂଖ୍ୟା ରିପୋର୍ଟରେ ଉଲ୍ଲେଖ ହୋଇନାହିଁ। ମୁଖ୍ୟତଃ ଏହି ଜନଜାତିମାନେ ସମ୍ବଲପୁର (ବିର୍‌ହୋର୍), ମାଲକାନଗିରି (ବଣ୍ଡୋପରଜା, ଦିଦାୟୀ), ମୟୂରଭଞ୍ଜ (ଲୋଧା, ମାଙ୍କଡ଼ିଆ) ଏବଂ କେନ୍ଦୁଝର (ଜୁଆଙ୍ଗ) ଜିଲ୍ଲାଗୁଡ଼ିକରେ ବହୁଳ ଭାବରେ ଏବଂ ଏମାନଙ୍କ ଜନସଂଖ୍ୟାର ସିଂହଭାଗ ରହିଥିବାର ଜଣାଯାଏ। ଏମାନଙ୍କ ସ୍ତ୍ରୀ-ପୁରୁଷ ହାର ଜୁଆଙ୍ଗ, ବଣ୍ଡୋ ପରଜା ଓ ଦିଦାୟୀମାନଙ୍କ ମଧ୍ୟରେ ଏକ ହଜାରରୁ ଊର୍ଦ୍ଧ୍ୱ ରହିଥିବା ସ୍ଥଳେ ଲୋଧା, ମାଙ୍କଡ଼ିଆ ଓ ବିର୍‌ହୋରମାନଙ୍କ ମଧ୍ୟରେ ଏକ ହଜାରରୁ କମ୍ ରହିଛି। ୦-୬ ବର୍ଷ ମଧ୍ୟରେ ଥିବା ସ୍ତ୍ରୀ-ପୁରୁଷ ହାର ମାଙ୍କଡ଼ିଆ, ଲୋଧା ଏବଂ ବିର୍‌ହୋର୍‌ମାନଙ୍କ ମଧ୍ୟରେ ଯଥାକ୍ରମେ ୭୪୪ ଏବଂ ୯୨୦ ରହିଛି, ଯାହାକି ଅତି ନୈରାଶ୍ୟଜନକ। ସେହିପରି ଏମାନଙ୍କ ମଧ୍ୟରେ ସାକ୍ଷରତା ହାର ୨୦ ଶତାଂଶରୁ ନିମ୍ନରେ ରହିଛି। ସେମାନଙ୍କ ମଧ୍ୟରେ ବଣ୍ଡୋପରଜା (୬.୫%), ଦିଦାୟୀ (୫.୯%) ଏବଂ ମାଙ୍କଡ଼ିଆ (୭.୬%) ରହିଛି, ଯାହାକି ଏମାନଙ୍କ ସାକ୍ଷରତା ହାର ବୃଦ୍ଧି ସକାଶେ କୌଣସି ସ୍ୱତନ୍ତ୍ର କାର୍ଯ୍ୟକ୍ରମର ଦାବୀରଖେ।

ଏହି ପୁରାତନ ଜନଜାତିମାନଙ୍କ ସକାଶେ ନିଆଯାଉଥିବା ଉନ୍ନୟନମୂଳକ କାର୍ଯ୍ୟକ୍ରମ ସୁଚାରୁରୂପେ କିପରି ଏମାନଙ୍କ ନିକଟରେ ପହଞ୍ଚିପାରିବ ଏଥିସକାଶେ କେବଳ ସରକାରଙ୍କ ଦାୟିତ୍ୱ ରହିଛି ତାହା ନୁହେଁ, ବରଂ ସମସ୍ତ ଶିକ୍ଷିତ ବ୍ୟକ୍ତିବିଶେଷ, ବିଶେଷତଃ ଜନଜାତିମାନଙ୍କ ସକାଶେ କାର୍ଯ୍ୟ କରୁଥିବା ଏବଂ ଚିନ୍ତା ଓ ମନନ କରୁଥିବା ବ୍ୟକ୍ତିମାନଙ୍କ ଆନ୍ତରିକତାର ଏକାନ୍ତ ଆବଶ୍ୟକତା ରହିଛି। ଭାରତ ସରକାରଙ୍କ ଜନଗଣନା ନିର୍ଦ୍ଦେଶାଳୟ ଦ୍ୱାରା ପ୍ରକାଶ ପାଇଥିବା ତଥ୍ୟସବୁ ଏହି ଜନଜାତିମାନଙ୍କ ବିକାଶମୂଳକ କାର୍ଯ୍ୟକ୍ରମର ରୂପରେଖ ଦେବାରେ ସହାୟ ହେବ, ଏହା ନିଶ୍ଚିତ ଭାବରେ ପ୍ରତ୍ୟୟପୂର୍ଣ୍ଣ ଅଟେ।

**(ଆକାଶବାଣୀ ସମ୍ବଲପୁର ଆନୁକୂଲ୍ୟରୁ ପ୍ରଚାରିତ)**

**॥ References ॥**

Census of India 2001 - Primary Census Abstract - Orissa (Vol. I), Directorate of Census Operations, Orissa, Govt. of India, Bhubaneswar.

Census of India 2001 - Status of Scheduled Castes and Scheduled Tribes in Orissa (Community Wise), (A Census Data Dissemination Workshop Publication), Directorate of Census Operations, Orissa, Govt. of India, Bhubaneswar.

Deogaonkar, S. G. 1994 - Tribal Administration and Development, New Delhi, Concept Publishing Company

Hasnain, N. 1992 - Tribal India, Delhi, Palaka Prakashan.

Verma, R. C. 2002 - Indian Tribes Through The Ages, Publication Division, Ministry of Information and Broadcasting, Government of India, New Delhi.

*ଜନଗଣନା ନିର୍ଦ୍ଦେଶାଳୟ, ଭୁବନେଶ୍ୱର*

*ଇମେଲ :* nayak.abhaya@rediffmail.com

# ଭାରତର ଜନଗଣନା ଏବଂ ଆଇ.ସି.ଆର. ଟେକ୍ନୋଲୋଜିର ପ୍ରୟୋଗ

*ସନ୍ତୋଷ କୁମାର ଆଚାର୍ଯ୍ୟ*

**ଭା**ରତର ୨୦୦୧ ଜନଗଣନା ହେଉଛି ଏକ ଐତିହାସିକ ଓ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ତଥା ତୃତୀୟ ଶତାବ୍ଦୀର ପ୍ରଥମ ଜନଗଣନା ଅଟେ । ଜନଗଣନା ତଥ୍ୟ ଭିତ୍ତିରେ ଆମ ଦେଶର ସମସ୍ତ ଉନ୍ନତି ତଥା ପ୍ରଗତିମୂଳକ ଯୋଜନାମାନ ପ୍ରସ୍ତୁତ କରାଯାଇଥାଏ । ୨୦୦୧, ମାର୍ଚ୍ଚ ୧ରେ ଭାରତର ଜନସଂଖ୍ୟା ଥିଲା ୧,୦୨୮,୭୩୭,୪୩୬ । ଚୀନ ପରେ ଏହା ପୃଥିବୀର ଦ୍ୱିତୀୟ ଜନସଂଖ୍ୟା ବହୁଳ ରାଷ୍ଟ୍ର ଅଟେ । ଜନଗଣନା ଦ୍ୱାରା ସଂଗୃହୀତ ବହୁବିଧ ତଥ୍ୟଗୁଡ଼ିକୁ ଏକ ବୃହତ୍ ଜନସଂଖ୍ୟା ପାଇଁ ବିଶ୍ଳେଷଣ କରି ଏହାର ଫଳକୁ ନିର୍ଭୁଲ ଏବଂ ସମୟ ସୀମା ମଧ୍ୟରେ ପ୍ରକାଶନ କରିବା ଏକ କଷ୍ଟସାଧ୍ୟ ବ୍ୟାପାର ।

ଭାରତର ରେଜିଷ୍ଟ୍ରାର ଜେନେରାଲ ଏବଂ ଜନଗଣନା କମିଶନର ସର୍ବଦା ଚେଷ୍ଟିତ କିପରି ନୂତନ ଜ୍ଞାନକୌଶଳ ପ୍ରୟୋଗ କରି ଖୁବ୍ କମ୍ ସମୟରେ ନିର୍ଭୁଲ ତଥ୍ୟ ପ୍ରଦାନ କରିବା ପାଇଁ । ଏହି ପରିପ୍ରେକ୍ଷୀରେ ଭାରତର ରେଜିଷ୍ଟ୍ରାର୍ ଜେନେରାଲ୍ ଅଫିସରରେ ୧୯୭୧ ମସିହାରେ ପ୍ରଥମ ମିନି କଂପ୍ୟୁଟର (ପି.ଡି.ପି ୧୧) ସ୍ଥାପନ କରାଯାଇଥିଲା । ଏହା କି ପଂଚିଙ୍ଗ କାର୍ଡ ଦ୍ୱାରା ପ୍ରସ୍ତୁତ କରାଯାଇଥିଲା । ଏହାପରେ ୧୯୮୧ ଜନଗଣନାରେ ପ୍ରଥମ ଥରପାଇଁ ଭାରତର ୧୪ଟି ରାଜ୍ୟରେ ଡାଟା ସେଣ୍ଟର ସ୍ଥାପନ କରାଯାଇଥିଲା ଏବଂ ବହୁତ ପରିମାଣରେ କମ୍ପ୍ୟୁଟର ପ୍ରଫେସନାଲକୁ ନିଯୁକ୍ତି ଦିଆଯାଇ କମ୍ପ୍ୟୁଟର ବ୍ୟବହାରକୁ ଅଧିକ ବିସ୍ତାରିତ କରାଯାଇଥିଲା ।

୧୯୯୧ ଜନଗଣନାରେ ପୁଣି ଭାରତର ସମସ୍ତ ରାଜ୍ୟର ଡାଟା ସେଣ୍ଟରକୁ ନବୀକରଣ କରାଯାଇ ନୂତନ କମ୍ପ୍ୟୁଟର ସ୍ଥାପନ କରାଯାଇଥିଲା । ୧୯୮୧ ଓ ୧୯୯୧ ଜନଗଣନା ତଥ୍ୟକୁ କମ୍ପ୍ୟୁଟରୀକରଣ କରିବା ପାଇଁ ପ୍ରଥମେ ସମସ୍ତ ତଥ୍ୟକୁ ଭାରତର ବିଭିନ୍ନ ରାଜ୍ୟ ଏବଂ ଜିଲ୍ଲାର ବିଭିନ୍ନ ସ୍ଥାନରେ କୋଡିଂସେଲ୍ ସ୍ଥାପନ କରି ସମସ୍ତ ତଥ୍ୟକୁ କୋଡିଂ କରାଯାଉଥିଲା । ଏହି ସମସ୍ତ ତଥ୍ୟ କୋଡିଂ ହୋଇସାରିଲା ପରେ ଏହାକୁ କମ୍ପ୍ୟୁଟର ମାଧ୍ୟମରେ ଡାଟା ଏଣ୍ଟ୍ରି କରାଯାଉଥିଲା । ଏହା ପାଇଁ ବହୁଳ ପରିମାଣରେ ଅର୍ଥ ଏବଂ ସମୟ ଅତିବାହିତ ହେଉଥିଲା । ଏପରି କରିବା ପରେ ମଧ୍ୟ ଜନଗଣନାର ସମସ୍ତ ତଥ୍ୟକୁ ବିଶ୍ଳେଷଣ କରି ଏହାର ଫଳ ପ୍ରକାଶ ପାଇବା ପାଇଁ ବହୁତ ବିଳମ୍ୱ ଘଟୁଥିଲା ।

ଅତୀତର ଅନୁଭୂତି ଏବଂ ନୂତନ ଜ୍ଞାନ କୌଶଳର ଆବିର୍ଭାବକୁ ଆଖି ଆଗରେ ରଖି ଭାରତର ରେଜିଷ୍ଟ୍ରାର ଜେନେରାଲ ତଥା ଜନଗଣନା କମିଶନର ଏକ ନୂତନ ଜ୍ଞାନକୌଶଳ ୨୦୦୧ ଜନଗଣନାରେ ପ୍ରୟୋଗ କରିଥିଲେ । ଏହାର ନାମ ହେଲା ଆଇ.ସି.ଆର ତଥା ଇଣ୍ଟେଲିଜେଣ୍ଟ କାରେକ୍ଟର ରେକୋଗ୍ନାଇଜେସନ୍ । ଅପ୍ଟିକାଲ ପଦ୍ଧତି ବ୍ୟବହାର କରୁଥିବା ଏହି କରେକ୍ଟର ରେକୋଗ୍ନାଇଜେସନର ଏକ ଉନ୍ନତ ଜ୍ଞାନକୌଶଳ । ଏହି ଆଇ.ସି.ଆର ଟେକ୍ନୋଲୋଜି ମାଧ୍ୟମରେ ପ୍ରଥମେ ସମସ୍ତ ତଫସିଲକୁ ମାସରେ ସମସ୍ତ ୩୦ ଦିନ, ସପ୍ତାହର ସାତଦିନ ଏବଂ ଦିନର ଚବିଶ ଘଣ୍ଟା ପଦ୍ଧତିରେ ସ୍କାନିଂ କରାଯାଉଥିଲା । ଏହା ଅଟୋମେଟିକ୍ ଫର୍ମ ପ୍ରୋସେସିଂ ଟେକ୍ନୋଲୋଜିର ଦ୍ୱାରା କରାଯାଉଥିଲା । ଏହାର କେତେକ ଫିଲଡକୁ (ସି.ଏ.ସି) ଇମେଜ୍ ଏନ୍ଏବ୍ଲଡ୍ କମ୍ପ୍ୟୁଟର ଆସିଷ୍ଟେଡ୍ କୋଡିଂ ଦ୍ୱାରା ଚିହ୍ନଟ କରାଯାଉଥିଲା । ଏହି ଆଇସିଆର ଟେକ୍ନୋଲୋଜିର ସଫଳ ପ୍ରୟୋଗ ପାଇଁ ଭାରତର ବିଭିନ୍ନ ରାଜ୍ୟରେ ଡାଟା ସେଣ୍ଟରକୁ ନବୀକରଣ କରାଯାଇଥିଲା ଏବଂ ବହୁପରିମାଣରେ ନୂତନ କମ୍ପ୍ୟୁଟର ହାଡ୍ୱେର ଏବଂ ସଫ୍ଟୱେୟାରର ନବୀକରଣ କରାଯାଇଥିଲା । ଏହି ପରିପ୍ରେକ୍ଷୀରେ ଦିଲ୍ଲୀ ସମେତ ଭାରତର ୧୫ଟି ରାଜ୍ୟର ଡାଟା ସେଣ୍ଟରରେ ୪୫ଟି ଏନ୍.ଟି ସରଭର, ୧୦୬୦-ପେଣ୍ଟିୟମ-୩ ପେରସନାଲ୍

କମ୍ପ୍ୟୁଟର, ୨୫ଟି ହାଇସ୍ପିଡ୍ ହେଭି ଡ୍ୟୁଟି ଡୁପ୍ଲେକ୍ସ ସ୍କାନର ସ୍ଥାପନ କରାଯାଇଥିଲା ଏବଂ ଏହି ବହୁଳ ପରିମାଣ ତଥ୍ୟକୁ ବେକ୍‌ଅପ୍ ପାଇଁ ଜିପ୍, ଏସ.ଏଲ୍.ଆର, ଡି.ଏଲ.ଟି ଡ୍ରାଇଭସ୍‌କୁ ମଧ୍ୟ ସ୍ଥାପନ କରାଯାଇଥିଲା। ଏହି କାର୍ଯ୍ୟକୁ ସୂଚାରୁ ରୂପେ ପରିଚାଳନା କରିବା ପାଇଁ ପ୍ରାୟ ୧୨୦୦ ଟେକ୍‌ନିକାଲ୍ ଅଫିସର ଏବଂ ୫୦୦ ଚୁକ୍ତିବଦ୍ଧ ଅପରେଟରଙ୍କୁ ନିୟୋଜିତ କରାଯାଇଥିଲା।

ଏହି ଟେକ୍ନୋଲୋଜିର ବ୍ୟବହାର ଦ୍ୱାରା କାର୍ଯ୍ୟରତ ସମସ୍ତ ଅଫିସରଙ୍କ ମାନ ନୂତନ ଜ୍ଞାନକୌଶଳର ବ୍ୟବହାର ଦ୍ୱାରା ଅଭିବୃଦ୍ଧି ଘଟିଥିଲା। ୨୦୦୧ ଜନଗଣନାର ସମସ୍ତ ତଥ୍ୟକୁ ୧୦୦ ପ୍ରତିଶତ ବିଶ୍ଳେଷଣ କରି ଟାବୁଲେସନ୍ ପ୍ରସ୍ତୁତି କରାଯାଇଅଛି। ଏହା କେବଳ ଆଇ.ସି.ଆର ଟେକ୍ନୋଲୋଜି ଦ୍ୱାରା ସମ୍ଭବପର ହୋଇଅଛି। ଏହି ଆଇ.ସି.ଆର ଟେକ୍ନୋଲୋଜି ଦ୍ୱାରା ବିଭିନ୍ନ ଡାଟା ପ୍ରୋସେସିଙ୍ଗ ପ୍ରୋଜେକ୍ଟ କରାଯାଇଥିଲା। ଯଥା :

୧) ଡିଷ୍ଟ୍ରିକ୍ଟ ସେନ୍‌ସସ୍ ହ୍ୟାଣ୍ଡବୁକ୍ ପ୍ରସ୍ତୁତ

୨) ଏକ୍‌ସଟ୍ରାକ୍‌ସନ୍ ଅଫ୍ ଡାଟା ଫ୍ରମ୍ ୨୦୦୧ ସେନ୍‌ସସ୍ ଡାଟା ଏବଂ ଟେବୁଲେସନ୍ ଅଫ୍ ସ୍ଲମ୍ ପ୍ରୋଜେକ୍ଟ।

୩) ସ୍କାନିଂ ଏଣ୍ଡ ଆଇସିଆର ବେସ୍‌ଡ ପ୍ରୋସେସିଂ ଫର ଭରବାଲ୍ ଅଟୋପ୍‌ସି (ଭାଇଟାଲ୍ ଷ୍ଟାଟିସ୍‌ଟିକ୍‌ସ୍ ଡିଭିଜନ୍)

୪) ସ୍କାନିଂ ଏଣ୍ଡ୍ ଆଇସିଆର ବେସ୍‌ଡ ପ୍ରୋସେସିଂ ଫର ଫିପ୍‌ଥ୍ ଇକୋନୋମିକ୍ ସେନ୍‌ସେସ୍ ଅଫ୍ ସେଣ୍ଟ୍ରାଲ୍ ଷ୍ଟାଟିସ୍‌କାଲ୍ ଅରଗାନାଇଜେସନ୍।

ପ୍ରଥମ ଥର ପାଇଁ ଗୃହ ଗଣନା, ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର ପ୍ରସ୍ତୁତି ଏବଂ ଜନଗଣନା ୨୦୧୧ ସହ ସମସ୍ତ ତଥ୍ୟକୁ ଆଇ.ସି.ଆର. ଟେକ୍ନୋଲୋଜି ମାଧ୍ୟମରେ କମ୍ପ୍ୟୁଟରୀକରଣ କରିବା ପାଇଁ ଯୋଜନା କରାଯାଇଅଛି। ଏହି ପରିପ୍ରେକ୍ଷୀରେ ସମସ୍ତ ତଫସିଲକୁ ସ୍କାନିଂ ପାଇଁ ପୂର୍ବ ପ୍ରସ୍ତୁତି କରାଯାଇଅଛି। ଏନ୍.ପି.ଆର. ପ୍ରସ୍ତୁତି କରିବା ପାଇଁ ସମସ୍ତ ଦେଶବାସୀଙ୍କର ବ୍ୟକ୍ତିଗତ ବିବରଣୀ ଏବଂ ୧୫ ବର୍ଷ ଓ ତଦୁର୍ଦ୍ଧ୍ୱ ବୟସର ସମସ୍ତ ବାସିନ୍ଦାଙ୍କର ଫଟୋ ଏବଂ ଆଙ୍ଗୁଳି ଛାପକୁ କମ୍ପ୍ୟୁଟରୀକରଣ କରାଯାଇ ଦେଶରେ ବାସ କରୁଥିବା ବାସିନ୍ଦାଙ୍କ ପାଇଁ ଏକ ଡାଟାବେସ୍ ପ୍ରସ୍ତୁତ କରାଯିବ।

ଏହାର ପ୍ରୟୋଗର ନୂତନ ଓ ଆଧୁନିକ ଜ୍ଞାନ କୌଶଳରେ ପ୍ରସ୍ତୁତି ପାଇଁ ନୂଆଦିଲ୍ଲୀରେ ୩ ଓ ୪ ଡିସେମ୍ବର ୨୦୦୭ରେ ଏକ ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥିଲା। ଏଥିରେ ଭାରତ ସରକାରଙ୍କର ଏବଂ ବହୁ ନାମିଦାମୀ କଂପାନୀର ସ୍କାନିଂ ଓ ଆଇ.ସି.ଆର ଟେକ୍ନୋଲୋଜିର ବିଶେଷଜ୍ଞମାନେ ଉପସ୍ଥିତ ରହି ସେମାନଙ୍କର ମତବ୍ୟକ୍ତ ଉପସ୍ଥାପନ କରିଥିଲେ। ଏହି ପରିପ୍ରେକ୍ଷୀରେ ଭାରତର ସମସ୍ତ ଡାଟା ସେଣ୍ଟରକୁ ଆଧୁନିକୀକରଣ କରାଯାଇଅଛି ଏବଂ ବହୁ ନୂତନ ଏବଂ ଅତ୍ୟାଧୁନିକ କମ୍ପ୍ୟୁଟର, ସ୍କାନର, ହାଇସ୍ପିଡ୍ ସରଭର ସ୍ଥାପନ କରାଯାଇଅଛି। ପ୍ରାଥମିକ ପର୍ଯ୍ୟାୟର କାର୍ଯ୍ୟ ଆରମ୍ଭ ହୋଇସାରିଛି। ଆଶା, ଭବିଷ୍ୟତରେ ୨୦୧୧ ଜନଗଣନାର ନିର୍ଭୁଲ ଏବଂ ସମୟସୀମା ମଧ୍ୟରେ ଦିଆଯାଇଥିବା ତଥ୍ୟ ଏହି ଟେକ୍‌ନୋଲୋଜିର ଗୁରୁତ୍ୱର ଉପଲବ୍ଧି ଅନ୍ୟାନ୍ୟ ବଡ଼ ଧରଣର ସର୍ବେକ୍ଷଣରେ ଏହାର ବ୍ୟବହାର ତଥା ଏହି ପଦ୍ଧତିର ଉନ୍ନତିକରଣରେ ସହାୟକ ହେବ। ଦେଶର ବିଭିନ୍ନ ସେବାରେ ଏହି ପଦ୍ଧତିର ବହୁଳ ବ୍ୟବହାର ଯୋଜନା ଏବଂ ମୂଲ୍ୟାୟନ ପଦ୍ଧତି ସବୁକୁ ନୂତନ ଦିଗ୍‌ଦର୍ଶନ ଦେବ।



# ଜନଗଣନା - ୨୦୧୧ ଏକ ଦୃଷ୍ଟିପାତ

ପ୍ରଦୀପ୍ତ କୁମାର ଦାସ

**ଭା**ରତର ଜନଗଣନା ସମଗ୍ର ବିଶ୍ୱରେ ଏକ ବୃହତ୍ ପ୍ରଶାସନିକ ସଫଳତା । ଏହା ପ୍ରଦାନ କରିଥାଏ ଦେଶର ସାମାଜିକ, ସାଂସ୍କୃତିକ, ଆର୍ଥିକ ତଥା ଅନ୍ୟାନ୍ୟ ବହୁବିଧ ଉପାଦେୟ ତଥ୍ୟ ଯାହାକି ଦେଶର ଯୋଜନା ପ୍ରଣୟନରେ ତଥା ସରକାରୀ ସଂସ୍ଥା ପରିଚାଳନାରେ ଏବଂ ବ୍ୟବସାୟ ସଂଗଠନ ଦିଗରେ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ଏଥିରୁ ସଂଗୃହୀତ ତଥ୍ୟଗୁଡ଼ିକ ଶିକ୍ଷକ, ଗବେଷକ, ବ୍ୟବସାୟୀ, ଶିଳ୍ପପତି ତଥା ବେସରକାରୀ ସଂସ୍ଥାମାନଙ୍କ ପାଇଁ ବହୁ ମୂଲ୍ୟବାନ ହୋଇଥାଏ । ୧୮୮୧ ମସିହା ପରଠାରୁ ପ୍ରାକୃତିକ ବିପର୍ଯ୍ୟୟ, ରାଜନୈତିକ ଅସ୍ଥିରତା, ବିଶ୍ୱଯୁଦ୍ଧ, ସ୍ୱାଧୀନତା ସଂଗ୍ରାମ ଇତ୍ୟାଦି ସତ୍ତ୍ୱେ ପ୍ରତି ୧୦ ବର୍ଷରେ ନିରବଚ୍ଛିନ୍ନ ଭାବରେ ଭାରତରେ ଜନଗଣନା ହୋଇଆସୁଅଛି । ଗଣନାରେ ନୂତନ ପ୍ରଣାଳୀ ଏବଂ ବୈଜ୍ଞାନିକ ପଦ୍ଧତିରେ ବିଶ୍ଳେଷଣ ଦ୍ୱାରା ଅଧିକ ତଥ୍ୟ ସମ୍ବଳିତ ଏବଂ ପ୍ରଦାନ କରିବା ସମ୍ଭବ ହୋଇଛି ।

ଭାରତରେ ଜନଗଣନା (ସେନ୍‌ସସ୍) ଦୁଇ ପର୍ଯ୍ୟାୟ ବିଶିଷ୍ଟ । ପ୍ରଥମ ପର୍ଯ୍ୟାୟ ଗୃହଗଣନା । ଏହି କାର୍ଯ୍ୟଟି ଆମ ଦେଶରେ ସମସ୍ତ ରାଜ୍ୟ ତଥା କେନ୍ଦ୍ରଶାସିତ ଅଞ୍ଚଳରେ ଏପ୍ରିଲ ୨୦୧୦ ରୁ ଜୁନ୍ ୨୦୧୦ ମଧ୍ୟରେ ସମ୍ପନ୍ନ ହୋଇଯାଇଛି । ଆମ ରାଜ୍ୟରେ ଏହି କାର୍ଯ୍ୟ ଏପ୍ରିଲ ୭ ରୁ ଆରମ୍ଭ ହୋଇ ମେ ମାସ ୨୨ ତାରିଖ ମଧ୍ୟରେ ସମ୍ପାଦିତ ହୋଇସାରିଛି । ଗୃହଗଣନା ମାଧ୍ୟମରେ ଜନବସତି ତଥା ଆବାସସ୍ଥଳୀଗୁଡ଼ିକୁ ଚିହ୍ନଟ କରାଯାଇ, ବିଲଡିଂ, ସେନସସ୍ ଗୃହ ଏବଂ ପରିବାର ତଥା ଅନୁଷ୍ଠାନ ଭୁକ୍ତ ପରିବାର ପାଇଁ ଏକ ନିର୍ଦ୍ଦିଷ୍ଟ ନୀତି, ନିୟମରେ ୩୫ଟି ସ୍ତମ୍ଭରେ ଥିବା ପ୍ରଶ୍ନଗୁଡ଼ିକ ପୂରଣ କରାଯାଏ । ଗୃହଗଣନା ମାଧ୍ୟମରେ ଗ୍ରାମାଞ୍ଚଳ ଓ ସହରାଞ୍ଚଳ ଗୃହମାନଙ୍କର ଗୁଣାତ୍ମକ ତଥା ପରିମାଣାତ୍ମକ ତଥ୍ୟ ଏବଂ ଏଥିରେ ବାସ କରୁଥିବା ପରିବାରମାନଙ୍କର ଆର୍ଥିକ, ସ୍ୱାସ୍ଥ୍ୟଗତ ଓ ସାମାଜିକ ସ୍ଥିତି ବିଷୟରେ ଅନେକ କିଛି ଧାରଣା ହୋଇଥାଏ । ଗୃହ ଗଣନାରେ ଗୃହଟି ବାସୋପଯୋଗୀ କି ନୁହେଁ, ଗୃହଟି କେଉଁ ଉଦ୍ଦେଶ୍ୟରେ ବ୍ୟବହୃତ, କେଉଁ ଉପାଦାନ ଦ୍ୱାରା ନିର୍ମିତ, ଏଥିରେ ଥିବା କୋଠରୀ ସଂଖ୍ୟା, ବାସ କରୁଥିବା ପରିବାରର ସଦସ୍ୟଙ୍କ ସଂଖ୍ୟା, ବିବାହିତ ଦମ୍ପତିଙ୍କ ସଂଖ୍ୟା, ଶୟନ କକ୍ଷର ସଂଖ୍ୟା, ଗୃହରେ ସ୍ନାନାଗାର, ପାଇଖାନା ଇତ୍ୟାଦିର ସୁବିଧା ଉପଲବ୍ଧ କି ନୁହେଁ, ପିଇବା ପାଣିର ସୁବିଧା, ଆଲୋକ ଓ ଜାଳେଣୀର ଉତ୍ସ, ରେଡ଼ିଓ, ଟିଭି, ଟେଲିଫୋନ, ମଟର ସାଇକେଲ, କାର ଇତ୍ୟାଦି ଅଛି କି ନାହିଁ ଇତ୍ୟାଦି ବିଷୟରେ ତଥ୍ୟ ସଂଗ୍ରହ କରାଯାଇଥାଏ । ୨୦୧୧ ରେ ମୋବାଇଲ ଫୋନ୍ ତଥା କମ୍ପ୍ୟୁଟର ବିଷୟରେ ମଧ୍ୟ ପ୍ରଶ୍ନ କରାଯାଇଛି ।

ଏଥର ଜନଗଣନା ଇତିହାସରେ ଏକ ନୂତନ ଅଧ୍ୟାୟର ଶୁଭାରମ୍ଭ କରାଯାଇଛି । ତାହା ହେଲା ରାଷ୍ଟ୍ରୀୟ ଜନସଂଖ୍ୟା ରେଜିଷ୍ଟର (NPR) । ଏଥିରେ ସଂଗୃହୀତ ତଥ୍ୟ ବ୍ୟବହାର କରି ନାଗରିକ ଆଇନ - 1955 (Citizen Act - 1955) ଏବଂ ନାଗରିକ Rule - 2003 ଅନୁସାରେ ପ୍ରତ୍ୟେକ ଭାରତୀୟ ନାଗରିକ (୫ ବର୍ଷରୁ ଉର୍ଦ୍ଧ୍ୱ)ଙ୍କ ବ୍ୟକ୍ତିଗତ ବିବରଣୀ, ଯଥା - ଧର୍ମ, ଭାଷା, ଜାତି, ପେଷା, ଶିକ୍ଷାଗତ ଯୋଗ୍ୟତା, ଜନ୍ମ ତାରିଖ, ଜନ୍ମସ୍ଥାନ ଇତ୍ୟାଦି ଲିପିବଦ୍ଧ ଥିବା, ୧୦ ଆଙ୍ଗୁଠିର ଟିପ ଚିହ୍ନ ସହ ଫଟୋ ଥିବା ଏକ ବାୟୋମେଟ୍ରିକ ଫଟୋ ପରିଚୟ ପତ୍ର, ଜନଗଣନା ପରେ ପ୍ରତ୍ୟେକଙ୍କୁ ପ୍ରଦାନ କରାଯିବାକୁ ବନ୍ଦୋବସ୍ତ କରାଯାଇଛି । ଏହି ପରିଚୟ ପତ୍ର ଦେଶର ସୁରକ୍ଷାକୁ ମଜଭୁତ କରିବା ସହିତ ନାଗରିକ ମାନଙ୍କର ବିଦେଶ ଯାତ୍ରା, କୋର୍ଟ, କଚେରୀ, ବ୍ୟାଙ୍କ, ବ୍ୟବସାୟ ସଂକ୍ରାନ୍ତୀୟ କାର୍ଯ୍ୟରେ ବ୍ୟବହାର ହୋଇପାରିବ ।

ଗୃହଗଣନାରୁ ଲବ୍ଧ ଜ୍ଞାନ ଓ ଅଭିଜ୍ଞତାକୁ ଭିତ୍ତିକରି ପରବର୍ତ୍ତୀ ପର୍ଯ୍ୟାୟରେ ଜନଗଣନା ମାଧ୍ୟମରେ ବିଭିନ୍ନ ବିଶ୍ଳେଷଣ

ଯୋଗ୍ୟ ତଥ୍ୟମାନ ସଂଗ୍ରହ କରାଯାଇଥାଏ। ଦ୍ୱିତୀୟ ପର୍ଯ୍ୟାୟ ଜନଗଣନାର ଜନସୁମାରୀ ସମଗ୍ର ଦେଶରେ ଫେବୃୟାରୀ ୯ ତାରିଖରୁ ଆରମ୍ଭ ହୋଇ ସେହିମାସ ୨୮ ତାରିଖ ମଧ୍ୟ ରାତ୍ରରେ ଶେଷ ହେବ। ମାର୍ଚ୍ଚ ୧ ତାରିଖରୁ ୫ ତାରିଖ ପୁନଃଗଣନା କରାଯିବ। ଗୃହଗଣନା ସରିଲା ପରଠୁ ଜନଗଣନା ୨୦୧୧ର ପ୍ରସ୍ତୁତି ପର୍ବ, ଜନଗଣନା ନିର୍ଦ୍ଦେଶାଳୟରେ ଆରମ୍ଭ ହୋଇସାରିଛି। ଏହି ସମୟ ମଧ୍ୟରେ ସଂକ୍ଷିପ୍ତ ଗୃହ ତାଲିକା ପ୍ରସ୍ତୁତି, ନୂତନ ଏନୁମେରସନ୍ ବ୍ଲକ ପ୍ରସ୍ତୁତି ପାଇଁ ଜିଲ୍ଲା ସ୍ତରୀୟ ପ୍ରଶିକ୍ଷଣ କରାଯାଏ। ଜନଗଣନା ପାଇଁ ପ୍ରତି ରାଜସ୍ୱ ଗ୍ରାମକୁ ଏବଂ ସହରାଞ୍ଚଳ କ୍ଷେତ୍ରରେ ୱାର୍ଡକୁ ସର୍ବନିମ୍ନ ଏକକ ଭାବରେ ଗ୍ରହଣ କରାଯାଇଛି। ଏହା ଜନଗଣନା ବ୍ଲକ ଭାବରେ ପରିଚିତ। ପ୍ରତ୍ୟେକ ଜନଗଣନାକାରୀ (ଏନୁମେରଟର) ପ୍ରାୟ ୧୫୦ଟି ପରିବାର ସଂମ୍ପର୍କରେ ତଥ୍ୟ ସଂଗ୍ରହ କରିବା ପାଇଁ ପ୍ରଶିକ୍ଷଣ ପାଇଥାଏ। ଏହି ଅନୁସାରେ ପ୍ରତି ରାଜସ୍ୱ ଗ୍ରାମ ଓ ସହରାଞ୍ଚଳର ୱାର୍ଡଗୁଡ଼ିକୁ ଏକ ବା ଏକାଧିକ ବ୍ଲକରେ ପରିଣତ କରାଯାଇ ତଥ୍ୟ ସଂଗ୍ରହ ନିମିତ୍ତ ଏନୁମେରଟରମାନଙ୍କୁ ଦିଆଯାଏ। ଜଣେ ଗଣନାକାରୀ ଏକ ବା ଏକାଧିକ ବ୍ଲକର କାର୍ଯ୍ୟ କରିବାକୁ ଦିଆଯାଇଥାଏ। ୫ କିମ୍ବା ୬ ଜଣ ଗଣନାକାରୀଙ୍କ ପାଇଁ ଜଣେ ସୁପରଭାଇଜର ନିଯୁକ୍ତି ପାଇଥାନ୍ତି।

ଜନଗଣନା କାର୍ଯ୍ୟକୁ ସୂଚାରୁରୂପେ ସମାହିତ କରିବା ପାଇଁ ଜନଗଣନା କାର୍ଯ୍ୟାଳୟର ଅଭିଜ୍ଞ କର୍ମଚାରୀମାନଙ୍କ ଦ୍ୱାରା ପ୍ରତି ଜିଲ୍ଲାରେ ଜିଲ୍ଲାର ପ୍ରଶାସନିକ ଅଧିକାରୀ, ଏନୁମେରଟର ସୁପରଭାଇଜର, ଚାର୍ଜ ଅଫିସର ମାନଙ୍କର ପ୍ରଶିକ୍ଷଣ ଦେବାର ବନ୍ଦୋବସ୍ତ କରାଯାଏ। ତା' ପୂର୍ବରୁ ରାଜ୍ୟ ସ୍ତରୀୟ ପ୍ରଶିକ୍ଷଣ କାର୍ଯ୍ୟଶାଳା ଭୁବନେଶ୍ୱରଠାରେ ଜନଗଣନା ନିର୍ଦ୍ଦେଶକଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଅନୁଷ୍ଠିତ ହୋଇ ଜିଲ୍ଲା ଜନଗଣନା ଅଧିକାରୀ ତଥା ଜିଲ୍ଲାର ଅତିରିକ୍ତ ଜିଲ୍ଲାପାଳ ଏବଂ ଏକ ଲକ୍ଷରୁ ଊର୍ଦ୍ଧ୍ୱ ଜନସଂଖ୍ୟା ବିଶିଷ୍ଟ ସହରର କାର୍ଯ୍ୟ ନିର୍ବାହୀ ଅଧିକାରୀମାନଙ୍କୁ ପ୍ରଶିକ୍ଷଣ ପ୍ରଦାନ କରାଯାଇଥାଏ।

ଜନଗଣନା ପାଇଁ ପ୍ରଶ୍ନର ଉତ୍ତର ସ୍ତମ୍ଭରେ କୋଡ୍ ମାଧ୍ୟମରେ ପାରିବାରିକ ତଫସିଲରେ ପୂରଣ ହେବ। ଜନଗଣନାରେ ଜଣେ ବ୍ୟକ୍ତି କେଉଁଠାରେ ଗଣନା ହେବ ତାହା ସେନସସ୍ ସଂଜ୍ଞାନୁସାରେ ସ୍ଥିରିକୃତ ହୋଇଥାଏ।

(୧) ପରିବାରର ଜଣେ ସାଧାରଣ ସଦସ୍ୟ ଯେଉଁମାନେ ସମଗ୍ର ଗଣନାକାଳ କିମ୍ବା ଅନ୍ୟୁନ ଗୋଟିଏ ଦିନ ସେହି ପରିବାରରେ ରହିଥିବେ କିମ୍ବା ରହିବାର ସମ୍ଭାବନା ଥିବ ସେମାନେ ସେହି ପରିବାରରେ ଗଣନା ହେବେ।

(୨) ଜଣେ ଅତିଥି ସମଗ୍ର ଗଣନା କାଳ ଯେଉଁ ପରିବାରରେ ରହୁଥିବେ ତାଙ୍କ ରୋଷେଇରେ ଖାଉଥିବେ, ସେ ସେହି ପରିବାରରେ ଗଣନା ହେବେ।

(୩) ପରିବାରର ପୁତ୍ର କିମ୍ବା କନ୍ୟା, କିମ୍ବା ପରିବାରର ଗୃହସ୍ୱାମୀ ସମଗ୍ର ଗଣନା କାଳରେ ଅନୁପସ୍ଥିତ ଥିବେ ସେମାନେ ସେହି ପରିବାରର ସଦସ୍ୟ ହେଲେ ମଧ୍ୟ ସେ ପରିବାରରେ ଗଣନା ହେବେ ନାହିଁ। ଯେଉଁଠାରେ ସେମାନେ ସାଧାରଣ ବାସିନ୍ଦା ଭାବରେ ରହିଥିବେ ସେଠାରେ ଗଣତି ହେବେ। ସମସ୍ତ ବ୍ୟକ୍ତିଙ୍କୁ ମାତ୍ର ଥରେ ଗଣନା କରିବା ଏବଂ କୌଣସି ବ୍ୟକ୍ତିଙ୍କୁ ସ୍ଥାନର ବିଭିନ୍ନତା ଯୋଗୁ ଏକାଧିକ ଥର ଗଣନା କରିବାର ସମ୍ଭାବନାକୁ ଏଡ଼ାଇ ନିର୍ଭୁଲ ଭାବରେ ଜନସଂଖ୍ୟା ନିରୂପଣ କରିବାରେ ସେନସସ୍ ସଂଜ୍ଞା ଉଚିତ ପଥ ପ୍ରଦର୍ଶନ କରିଥାଏ।

ପାରିବାରିକ ତଫସିଲରେ ପରିବାରର ପ୍ରତ୍ୟେକ ସଦସ୍ୟଙ୍କ ନାମ, ମୁଖ୍ୟଙ୍କ ସହିତ ସଂପର୍କ ଲିପିବଦ୍ଧ କରାଯିବ, ପରିବାରର ମୁଖ୍ୟ କହିଲେ ଯେ ପରିବାର ପରିଚାଳନାରେ ମୁଖ୍ୟ ଭୂମିକା ନେଇଥାନ୍ତି ସେ ପୁରୁଷ ହୁଅନ୍ତୁ କିମ୍ବା ସ୍ତ୍ରୀ ତାଙ୍କୁ ମୁଖ୍ୟ ଭାବରେ ଗ୍ରହଣ କରାଯିବ। ପରିବାରର ସଦସ୍ୟମାନଙ୍କର ବୟସ (ଜନ୍ମତାରିଖ) ବୈବାହିକ ଅବସ୍ଥା, ଶିକ୍ଷାଗତ ଯୋଗ୍ୟତା, ଧର୍ମ, ମାତୃଭାଷା, ଜାଣିଥିବା ଅନ୍ୟଭାଷା, ସାକ୍ଷର, ନିରକ୍ଷର, ତଫସିଲଭୁକ୍ତ ଜାତି, ଉପଜାତି ଇତ୍ୟାଦି ବିଷୟରେ ତଥ୍ୟ ସଂଗ୍ରହ କରାଯିବ। ଜନଗଣନା ସଂଜ୍ଞାନୁସାରେ ୬ ବର୍ଷରୁ ଊର୍ଦ୍ଧ୍ୱ ସଦସ୍ୟମାନେ ଯଦି ପଢ଼ିପାରୁଥିବେ, ଲେଖିପାରୁଥିବେ ଏବଂ ବୁଝିପାରୁଥିବେ ସେମାନେ ସାକ୍ଷର ଶ୍ରେଣୀ ଭୁକ୍ତ ହେବେ। ଏସବୁ ବ୍ୟତୀତ କେତେକ ସାମାଜିକ, ସାଂସ୍କୃତିକ ଏବଂ ଅର୍ଥନୈତିକ ବିଷୟବସ୍ତୁକୁ ଜନଗଣନା ତଫସିଲରେ ସ୍ଥାନ ଦିଆଯାଇଛି।

ଜନଗଣନାର ଏକ ବିଶିଷ୍ଟ ଦିଗ ହେଉଛି ଆର୍ଥିକ କାର୍ଯ୍ୟକଳାପରେ ନିୟୋଜିତ ବ୍ୟକ୍ତିମାନଙ୍କୁ ଚିହ୍ନଟ କରି ସେମାନେ ନିୟୋଜିତ କାର୍ଯ୍ୟାବଳୀକୁ ଲିପିବଦ୍ଧ କରିବା। ଶିଶୁ ଏବଂ ମହିଳାମାନଙ୍କର ଆର୍ଥିକ କାର୍ଯ୍ୟକୁ ସଠିକ୍ ଭାବରେ ଚିହ୍ନଟ କରି ତଥ୍ୟ ଉପସ୍ଥାପନା କରିବା। ଜନଗଣନା ସଂଜ୍ଞାନୁସାରେ କୌଣସି

ବ୍ୟକ୍ତି ଯଦି ବର୍ଷକ ମଧ୍ୟରେ ଗୋଟିଏ ଦିନ କୌଣସି ଆର୍ଥିକ ଉତ୍ପାଦନକ୍ଷମ କାର୍ଯ୍ୟ କଳାପରେ ନିଜକୁ ନିୟୋଜିତ କରିଥାନ୍ତି ତାଙ୍କୁ କର୍ମୀ ଭାବରେ ଗଣନା ଭୁକ୍ତ କରାଯିବ। ଜନଗଣନାରେ କର୍ମ ସହ ଅର୍ଥ ରୋଜଗାର, (ଟଙ୍କା ଆକାରରେ ହେଉ କିମ୍ବା ଜିନିଷପତ୍ର ପ୍ରଦାନରେ) ସଂପୃକ୍ତ। ଯଦି ଜଣେ ଗୃହିଣୀ ନିଜ ପରିବାରରେ ବ୍ୟବହାର ପାଇଁ ବଡ଼ି, ଆଚାର, ପାମ୍ପଡ଼ ଇତ୍ୟାଦି ପ୍ରସ୍ତୁତ କରୁଥାନ୍ତି ସେ କର୍ମୀ ଶ୍ରେଣୀ ଭୁକ୍ତ ହେବେ ନାହିଁ କିନ୍ତୁ ଯଦି ସେ ଏହି ଜିନିଷଗୁଡ଼ିକ ବିକ୍ରି କରି ରୋଜଗାର କରୁଥାନ୍ତି ତେବେ ସେ କର୍ମୀ ଭାବରେ ବିବେଚିତ ହେବେ। ଆମ ଦେଶରେ ଅଧିକାଂଶ ଚାଷ କାର୍ଯ୍ୟ ଏବଂ ଚାଷ କାର୍ଯ୍ୟ ବ୍ୟତୀତ ଅନେକ ଆର୍ଥିକ କାର୍ଯ୍ୟକଳାପ ପାରିବାରିକ ଭିତ୍ତିକ। ବିଶେଷ କରି କୃଷି ଋତୁରେ ଛୋଟ ପିଲା, ସ୍ତ୍ରୀ, ବୟସ୍କ ବ୍ୟକ୍ତିମାନେ ଚାଷ କାର୍ଯ୍ୟରେ ନିୟୋଜିତ ହୋଇଥାନ୍ତି। ଘରୋଇ ଶିଳ୍ପରେ ମଧ୍ୟ ନିୟୋଜିତ ଥାନ୍ତି ଏଣୁ ଏମାନେ କର୍ମୀ ଭାବରେ ଗଣନା ହେବେ। ଛ ମାସରୁ ଅଧିକ ସମୟ କାର୍ଯ୍ୟ କରିଥିଲେ ମୁଖ୍ୟ କର୍ମୀ, ଛ' ମାସରୁ କମ କାର୍ଯ୍ୟ କରିଥିଲେ ସାମୟିକ କର୍ମୀ ଆଦୌ କାର୍ଯ୍ୟ କରିନଥିଲେ କର୍ମବିହୀନ। ଏଣୁ ଏ କ୍ଷେତ୍ରରେ ଅନୁସନ୍ଧାନମୂଳକ ପ୍ରଶ୍ନ ପଚାରି ସଠିକ ଭାବରେ ତଥ୍ୟ ଲିପିବଦ୍ଧ କରିବା ଉଚିତ୍। ଜନଗଣନାରେ କର୍ମ ସମ୍ପର୍କୀୟ ତଥ୍ୟ ଏତେ ବ୍ୟାପକ ଯେ ସମସ୍ତ ତଥ୍ୟ ଏଥିରେ ଉପସ୍ଥାପନା କରିବା ସମ୍ଭବ ନୁହେଁ। ଏଗୁଡ଼ିକ ଉତ୍ତରଦାତାଙ୍କଠାରୁ କିପରି ଆଣିପାରିବେ ସେଥିପାଇଁ ଏନୁମେରଟରମାନଙ୍କୁ ବିଶେଷ ଭାବରେ ପ୍ରଶିକ୍ଷଣ ଦିଆଯାଇଛି। ଏତଦ୍‌ବ୍ୟତୀତ ଶାରୀରିକ ମାନସିକ ଭାବରେ ଅକର୍ମଣ୍ୟ, ବ୍ୟକ୍ତିମାନଙ୍କ କର୍ମ ସଂସ୍ଥାନ, କର୍ମ ସଂସ୍ଥାନଠାରୁ ବାସଗୃହର ଦୂରତ୍ୱ, ଗମନା ଗମନ, ଜନ୍ମସ୍ଥାନ, ବାସସ୍ଥାନ ପରିବର୍ତ୍ତନ କାରଣ ତଥା ମହିଳା ମାନଙ୍କର ପ୍ରଜନନ ସମ୍ବନ୍ଧୀୟ ବିବରଣୀ ସଂଗ୍ରହ କରାଯିବାର ବ୍ୟବସ୍ଥା ଅଛି।

ଗୃହଗଣନା ସମୟରେ କେବଳ ସାଧାରଣ ଓ ଅନୁଷ୍ଠାନଗତ ପରିବାର ସମ୍ପର୍କରେ ତଥ୍ୟ ସଂଗ୍ରହ କରାଯାଇଥିଲା କିନ୍ତୁ ଜନଗଣନା ବେଳେ ଏହି ଦୁଇ ପ୍ରକାର ପରିବାର ସହ ଗୃହହୀନ ପରିବାର ସମ୍ପର୍କରେ ତଥ୍ୟ ସଂଗ୍ରହ କରାଯିବ। ଯେଉଁ ବ୍ୟକ୍ତିମାନଙ୍କର କୌଣସି ନିର୍ଦ୍ଦିଷ୍ଟ ବାସସ୍ଥାନ ନାହିଁ ସେମାନେ ରେଲୱେ, ପ୍ଲାଟଫର୍ମ, ବସ୍‌ଷ୍ଟାଣ୍ଡ, ଓଭରବ୍ରିଜ, ମନ୍ଦିର ଇତ୍ୟାଦି ସ୍ଥାନମାନଙ୍କରେ ରହିଥାନ୍ତି। ସେମାନଙ୍କୁ ରାତ୍ର ସମୟରେ ପାଇବା ସମ୍ଭବ ଏଣୁ ୨୮ ତାରିଖ ମଧ୍ୟରାତ୍ରରେ ସେମାନଙ୍କୁ ଗଣନା କରାଯାଇଥାଏ।

ଅନେକ ପ୍ରଚାର ପ୍ରସାର ସତ୍ତ୍ୱେ ସହରରେ ରହୁଥିବା ଉଚ୍ଚ ବର୍ଗର ଶିକ୍ଷିତ ବ୍ୟକ୍ତିମାନେ ମଧ୍ୟ କିଛି ସମୟ ଜନଗଣନା ଏନୁମେରଟରମାନଙ୍କୁ ତାଙ୍କ ପରିବାରର ତଥ୍ୟ ପ୍ରଦାନ କରିବାକୁ ଏବଂ ଭଡ଼ାରେ ରହୁଥିବା ପରିବାରମାନଙ୍କ ସମ୍ପର୍କରେ ତଥ୍ୟ ଦେବାକୁ ବାରଣ କରିଥାନ୍ତି। ସେମାନେ ହୁଏତ ଅବଗତ ନୁହନ୍ତି, ଜନଗଣନାରେ ପ୍ରଦତ୍ତ ତଥ୍ୟ ସମ୍ପୂର୍ଣ୍ଣ ଗୋପନୀୟ ଏବଂ କୌଣସି କୋର୍ଟ, କଚେରୀରେ ଗ୍ରହଣ ଯୋଗ୍ୟ ନୁହେଁ। ନିଜର ଜ୍ଞାତସାରରେ ଜନଗଣନା ଏନୁମେରଟରଙ୍କୁ ଅସତ୍ୟ ତଥ୍ୟ ପ୍ରଦାନ, ତଥ୍ୟଦେବାକୁ ବାରଣ କରିବା ଇତ୍ୟାଦି ଦଣ୍ଡନୀୟ ଅପରାଧ। ଜନଗଣନା ଏକ ଗୁରୁତ୍ୱପୂର୍ଣ୍ଣ ଜାତୀୟ କାର୍ଯ୍ୟକ୍ରମ। ଆସନ୍ତୁ ସମସ୍ତେ ଏହି କାର୍ଯ୍ୟକ୍ରମରେ ସହଯୋଗ କରି ଦେଶର ଉନ୍ନତିରେ ସହାୟକ ହେବା। ପ୍ରତ୍ୟେକ ମଣିଷର ଗୁରୁତ୍ୱ ରହିଛି ଏବଂ ଜନଗଣନା ଜନଗଣଙ୍କ ପାଇଁ।

*ଜନଗଣନା ଭବନ*
*ଭୁବନେଶ୍ୱର*



# ଜନଗଣନା ଅନ୍ତରାଳେ ...

*ସୁନାରାମ ମାହାଲି*

ପୃଥିବୀ ପୃଷ୍ଠରେ ମନୁଷ୍ୟ ସୃଷ୍ଟି ହେବା ପରେ ଘଞ୍ଚ ଅରଣ୍ୟ ମଧ୍ୟରେ ଠାଏ ଠାଏ ରାତ୍ରୀଯାପନ କରୁ କରୁ ହୃଦ୍‌ବୋଧ କଲା, ବନ୍ୟଜନ୍ତୁଙ୍କଠାରୁ ନିଜକୁ ରକ୍ଷା କରିବାକୁ ହେଲେ ଦଳବଦ୍ଧ ଜୀବନଯାପନ ନିହାତି ଦରକାର। ଯେହେତୁ ଭଗବାନଙ୍କ ସୃଷ୍ଟି ମଧ୍ୟରେ ମନୁଷ୍ୟ ହିଁ ଏକମାତ୍ର ବିବେକବାନ ପ୍ରାଣୀ। ମନୁଷ୍ୟ ସାମାଜିକ ଜୀବନର ଆବିଷ୍କାର କରି ଏହାକୁ ଜୀବନଯାପନର ପ୍ରଣାଳୀ ରୂପେ ଗ୍ରହଣ କଲା। ଦଳବଦ୍ଧ ଜୀବନଯାପନ ଯୋଗୁଁ ସେ ନିଜକୁ ଚିହ୍ନିପାରିଲା ଓ ତା'ର ପରିଚୟ ଖୋଜି ପାଇଲା।

ମନୁଷ୍ୟ ଅନେକ ସ୍ତର ଦେଇ ଗତି କରିଆସିଛି ଏବଂ ନିଜକୁ ରକ୍ଷା କରିବା ପାଇଁ ବିଭିନ୍ନ ଅସ୍ତ୍ରଶସ୍ତ୍ର ବ୍ୟବହାର କରିଛି। ଯଥା - ପ୍ରସ୍ତର ନିର୍ମିତ ଅସ୍ତ୍ର, ଲୌହ ନିର୍ମିତ ଅସ୍ତ୍ର ଇତ୍ୟାଦି। ପ୍ରଥମେ ସେ ପଥରରୁ ବିଭିନ୍ନ ପ୍ରକାର ଅସ୍ତ୍ର ତିଆରି କଲା ଏବଂ ପରବର୍ତ୍ତୀ କାଳରେ ଲୁହାରୁ ନାନା ପ୍ରକାର ଅସ୍ତ୍ର ତିଆରି କଲା ଏବଂ ଆତ୍ମରକ୍ଷା ପାଇଁ ବିଭିନ୍ନ ଉଦ୍ଦେଶ୍ୟରେ ବ୍ୟବହାର କଲା। କ୍ରମେ ସେ ନିଜର ଅସ୍ତିତ୍ୱ ଜାଣିପାରିଲା ଏବଂ ତା'ର ଆତ୍ମୀୟଙ୍କ ସଂଖ୍ୟା ଜାଣିବା ପାଇଁ ଗଣନା ପଦ୍ଧତିର ଆବିଷ୍କାର କଲା।

ଉଇଲିୟମ୍ ପିଟରସନ୍‌ଙ୍କ ମତରେ ପ୍ରାଚୀନ ସମାଜରେ ମାନବ ଜାତିକୁ ଦୁଇଟି କାରଣରୁ ବିଶ୍ଳେଷଣ କରାଯାଉଥିଲା। ମୁଖ୍ୟ ଉଦ୍ଦେଶ୍ୟ ହେଲା - କର ବସାଇବା, ସୈନିକର ଦାୟିତ୍ୱ ଦେବା କିମ୍ବା ଯେଉଁମାନେ ଯୋଗ୍ୟ ବିବେଚିତ ସେମାନଙ୍କୁ କଷ୍ଟକର ସେବାରେ ନିୟୋଜିତ କରିବା। ଦ୍ୱିତୀୟରେ ଯଦି ଜଣେ ସେମାନଙ୍କ ସଂଖ୍ୟାକୁ ଠିକ୍ ଭାବରେ ଉପସ୍ଥାପନ କଲା, ତେବେ ସମୁଦାୟ ଜନସଂଖ୍ୟାକୁ ଅନାୟାସରେ ନିରୂପଣ କରାଯାଇପାରିବ। ଆଧୁନିକ ସମାଜରେ ଜନସଂଖ୍ୟାର ପରିସଂଖ୍ୟାନ ଏହାର ଏକ ରୂପାନ୍ତର ମାତ୍ର। ସମୁଦାୟ ଜନସଂଖ୍ୟାର ସର୍ବପ୍ରଥମ ଗଣନା New France (ବର୍ତ୍ତମାନର କ୍ୟୁବେକ୍)ରେ 1665 ମସିହାରେ ହୋଇଥିବାର ଜଣାଯାଏ ଏବଂ ପରବର୍ତ୍ତୀ ଶତାବ୍ଦୀରେ ସେଠାରେ ଷଷ୍ଠଦଶ ଗଣନା ହୋଇଥିଲା।

ନିଜ ଦେଶର ଜନସଂଖ୍ୟାର ସଠିକ୍ ଗଣନା କରିଥିବା ଦେଶମାନଙ୍କ ମଧ୍ୟରେ ପ୍ରଥମ ଦେଶ ହେଉଛି - "ସ୍କାଣ୍ଡିନେଭିଆ"।

ଧର୍ମଯାଜକମାନଙ୍କ ସଂଖ୍ୟାକୁ ଯେଉଁଭଳି ଭାବେ ରଖାଯାଉଥିଲା, ଠିକ୍ ସେହିପରି ସୁଇଡେନ୍ ଦେଶରେ ଲୁଥେରାନ୍ ମନ୍ତ୍ରୀମାନଙ୍କର ସଂଖ୍ୟା ଗଣନା କରାଯାଉଥିଲା ଏବଂ ପ୍ରତି ପାଞ୍ଚବର୍ଷ ବ୍ୟବଧାନରେ ସୁଇଡେନ୍ ୧୭୪୯ ମସିହାରୁ ତାଙ୍କ ଦେଶର ଧର୍ମଯାଜକମାନଙ୍କୁ ଜନସଂଖ୍ୟାର ରିପୋର୍ଟ ଦେବାପାଇଁ କୁହାଗଲା। ଯଦ୍ଦ୍ୱାରା ସେହି ଦେଶର ଜନସଂଖ୍ୟାର ସଠିକ୍ ହିସାବ କରାଯାଇପାରିବ। ଏହି ବ୍ୟବସ୍ଥା ଫିନ୍‌ଲ୍ୟାଣ୍ଡରେ ମଧ୍ୟ ଥିଲା ଏବଂ କ୍ରମେ କ୍ରମେ ଡେନ୍‌ମାର୍କ ଏବଂ ଆଇସ୍‌ଲ୍ୟାଣ୍ଡରେ ମଧ୍ୟ ଏହି ବ୍ୟବସ୍ଥାର ପ୍ରଚାର ଓ ପ୍ରସାର ହେଲା।

ଆମେରିକାରେ ପ୍ରଥମ ଜନଗଣନା ୧୭୯୦ ମସିହାରେ ହେଲା। ଯଦିଓ ଏହା ପୃଥିବୀର ପ୍ରଥମ ଗଣନା ନୁହେଁ। ତଥାପି ରାଜନୈତିକ କାରଣ ଯୋଗୁଁ ଏହା ଦ୍ୱାରା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଥା ସୂତ୍ରପାତ ହେଲା। ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଇଉରୋପ ମହାଦେଶର ଦେଶଗୁଡ଼ିକ ଦ୍ୱାରା ସଂଗୃହୀତ ହୋଇଥିବା ପରିସଂଖ୍ୟାନ ତଥ୍ୟକୁ ଦେଶର ଗୋପନୀୟ ତଥ୍ୟ ବୋଲି ବିଚାର କରାଗଲା।

ଆଧୁନିକ ଜନଗଣନା ଯୁକ୍ତରାଷ୍ଟ୍ର ଆମେରିକାରେ ଗଣତାନ୍ତ୍ରିକ ସରକାରଙ୍କ ଆନ୍ତରିକ ସହଯୋଗରେ ଆରମ୍ଭ ହେଲା ଏବଂ ଏହାର ଫଳାଫଳକୁ ସଙ୍ଗେ ସଙ୍ଗେ ସର୍ବସାଧାରଣଙ୍କୁ ଜଣାଇ ଦିଆଗଲା। ଯୁକ୍ତରାଷ୍ଟ୍ର ଆମେରିକା ଦ୍ୱାରା ହୋଇଥିବା ନିୟମିତ ଜନଗଣନା ଆଭିମୁଖ୍ୟର ଦିଗ୍‌ଦର୍ଶନରେ ଅନ୍ୟ ଦେଶମାନଙ୍କରେ ଏହି ବ୍ୟବସ୍ଥାକୁ ପ୍ରସାର କରାଗଲା (Will Cox - 1930)।

ବିଭିନ୍ନ ଦେଶଗୁଡ଼ିକ ଦ୍ୱାରା ଏହି ବ୍ୟବସ୍ଥା ଆରମ୍ଭ ହେବା ଯୋଗୁଁ ଜନସଂଖ୍ୟା ପରିସଂଖ୍ୟାନ ସମ୍ବନ୍ଧୀୟ ତଥ୍ୟକୁ ନିୟମିତ

ସଂଗ୍ରହ କରାଯିବାର ପଦ୍ଧତିର କ୍ରମବିକାଶ ହେଲା । ଊନବିଂଶ ଶତାବ୍ଦୀ ପୂର୍ବରୁ ପୃଥିବୀର ଅନେକ ଦେଶ ଜନସଂଖ୍ୟାର ସଠିକ୍ ଗଣନା କରିଆସୁଛନ୍ତି । ଯେତେବେଳେ ଇଉରୋପିୟାନ୍ ଶକ୍ତିମାନେ ଉପନିବେଶ ମାନ ଗଠନ କଲେ, ଯେପରିକି ଇଂଲଣ୍ଡ ଭାରତରେ, ବ୍ରିଟିଶ ୱେଷ୍ଟଇଣ୍ଡିଜ୍‌ରେ, ଫ୍ରାନ୍ସ ଆଲ୍‌ଜେରିଆରେ, କାନାଡ଼ା ନେଦରଲ୍ୟାଣ୍ଡରେ, ଡଚ୍‌ମାନେ ଇଷ୍ଟ ଇଣ୍ଡିଜ୍‌ରେ ସେତେବେଳେ ବିଭିନ୍ନ ଦେଶରେ ଜନଗଣନାର ପରଂପରା ଆରମ୍ଭ କରିଥିଲେ । ଅବିଭକ୍ତ ଭାରତରେ ଲର୍ଡ଼ ରିପନଙ୍କ ଦ୍ୱାରା ୧୮୮୧ ମସିହାରେ ପ୍ରଥମ ଜନଗଣନା ଆରମ୍ଭ ହୋଇଥିଲା ।

ପଶ୍ଚିମ ଇଉରୋପୀୟାନ୍ ଦେଶମାନଙ୍କର ଏକୀକରଣ ଆରମ୍ଭ ହେବା ଦିନ ଠାରୁ, ଅନ୍ୟ ଅନୁନ୍ନତ ରାଷ୍ଟ୍ରମାନଙ୍କରେ ମଧ୍ୟ ଜନସଂଖ୍ୟା ତଥ୍ୟକୁ ଠିକ୍ ଭାବରେ ସଂଗ୍ରହ କରିବା ଏବଂ ଏହାର ବିଶ୍ଳେଷଣ ପ୍ରଣାଳୀରେ ଯଥେଷ୍ଟ ଉନ୍ନତି ଘଟିଛି ।

ଭାରତରେ ୧୮୭୨ ମସିହାରେ ଦେଶର ବିଭିନ୍ନ ଅଞ୍ଚଳରେ ପୃଥକ ପୃଥକ ଭାବେ ଜନଗଣନା କାର୍ଯ୍ୟ ସମ୍ପାଦନ କରାଯାଇଥିଲା, ଯାହାକି ନିୟମିତ ଏବଂ ଧାରାବାହିକ ନ ଥିଲା । କିନ୍ତୁ ପରାଧୀନ ଭାରତରେ ଭାରତର ଗଭର୍ଣ୍ଣର ଜେନେରାଲ ଲର୍ଡ଼ ରିପନଙ୍କ ସମୟରେ ୧୮୮୧ ମସିହାରେ ପ୍ରଥମ ଜନଗଣନା କାର୍ଯ୍ୟ ଅନୁଷ୍ଠିତ ହୋଇଥିଲା । ଏହି ସମୟରୁ ଅଦ୍ୟାବଧି ଭାରତରେ ଏହି ଜାତୀୟ ମହାନ୍ କାର୍ଯ୍ୟକୁ ନିରବଚ୍ଛିନ୍ନ ଭାବେ କରାଯାଇ ଆସୁଅଛି । ପ୍ରତି ୧୦ ବର୍ଷରେ ଥରେ ଜନଗଣନା କାର୍ଯ୍ୟ ସଂପାଦନ କରାଯାଏ । ଏହାର କାରଣ ହେଲା, ଏହା ବହୁତ ବ୍ୟୟବହୁଳ ଏବଂ ସମୟ ସାପେକ୍ଷ ଅଟେ । ସେଥିପାଇଁ ଏହି କାର୍ଯ୍ୟଟି ଦଶବର୍ଷରେ ଥରେ କରାଯିବାକୁ ଭାରତ ସରକାର ସ୍ଥିର କରିଛନ୍ତି । ଭାରତର ଜନଗଣନା ପୃଥିବୀରେ ସର୍ବବୃହତ ଜନଗଣନା ଭାବେ ବିବେଚନା କରାଯାଏ ଏବଂ ଏହା ଶ୍ରେଷ୍ଠ ଜନଗଣନା ବୋଲି ବିଶ୍ୱ ବିଦିତ । ଭାରତ ଯେ ଜନଗଣନାରେ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ, ଏହା ଏକ ବୃହତ୍ ଗଣତାନ୍ତ୍ରିକ ରାଷ୍ଟ୍ରର ମାନ୍ୟତା ଅର୍ଜନ କରିଅଛି ।

ଭାରତର ଜନଗଣନା ପରିସଂଖ୍ୟାନ ଦେଶର ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ ସଂପାଦନ କରିବା ତଥା ଦେଶ ଗଠନ କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ଦେଶର ବିଭିନ୍ନ ପ୍ରକାର ଯୋଜନାର ରୂପରେଖ ଓ ରୂପାୟନ ଜନଗଣନା ପରିସଂଖ୍ୟାନର ତଥ୍ୟକୁ ଭିତ୍ତି କରି ପ୍ରସ୍ତୁତ କରାଯାଇଥାଏ । ଦେଶର ସବୁଠାରୁ ମୂଲ୍ୟବାନ୍ ସଂପଦ ହେଉଛି ମାନବ ସମ୍ବଳ, ଖଣିଜ ସମ୍ପଦ ସହିତ । ସରକାର ଯେ କୌଣସି ଯୋଜନା କରନ୍ତୁ ନା କାହିଁକି ଜନସଂଖ୍ୟା ହିଁ ଏହାର ଆଧାର । ଏପରିକି ସରକାରୀ ଭିତ୍ତିଭୂମି ହେଉ ଅଥବା ଗୃହ ଉନ୍ନୟନ ଯୋଜନା, ଏହାର କେନ୍ଦ୍ର ବିନ୍ଦୁ ହେଲା - ଜନଗଣନା ତଥ୍ୟ । ବାସଗୃହ, ଶିକ୍ଷା, ସ୍ୱାସ୍ଥ୍ୟ, ପାନୀୟ ଜଳ, ପରିମଳ ବ୍ୟବସ୍ଥା, ସ୍ୱିରେଜ ବ୍ୟବସ୍ଥା ଇତ୍ୟାଦି ଏବଂ ଜନସାଧାରଣଙ୍କୁ କି କି ମୌଳିକ ସୁବିଧା ମାନ ଉପଲବ୍ଧ ହେଉଅଛି ତାହା କେବଳ ଜନଗଣନା ପରିସଂଖ୍ୟାନ ତଥ୍ୟରୁ ହିଁ ମିଳିଥାଏ ସବୁ ଅଞ୍ଚଳ ପାଇଁ ଏବଂ ସବିଶେଷ ଭାବରେ ।

*ଜନଗଣନା ନିର୍ଦ୍ଦେଶାଳୟ*
*ଭୁବନେଶ୍ୱର*



ଜନଗଣନା କାର୍ଯ୍ୟକ୍ରମରେ ପ୍ରତ୍ୟେକଙ୍କୁ ସାମିଲ କରିବା ପାଇଁ ପଥପ୍ରାନ୍ତ ନାଟକର ଏକ ଦୃଶ୍ୟ ।

# ୨୦୧୧ ମସିହାର ଜନଗଣନା ଓ ଆମେ

*ସତ୍ୟନାରାୟଣ ମହାପାତ୍ର*

**ଆ**ନୁଷ୍ଠାନିକ ଭାବେ ଜନସୁମାରି କରାଯିବା ବା ମୁଣ୍ଡଗଣନା କରାଯିବା "ଜନଗଣନା" ବା ସେନ୍‌ସସ୍‌ର ଆଭିଧାନିକ ଅର୍ଥ। ସେହି କ୍ରମରେ କୌଣସି ଦ୍ରବ୍ୟର ଗଣନାକୁ ମଧ୍ୟ ସେହି ଅର୍ଥର ପରିସରଭୁକ୍ତ କରାଯାଇପାରେ। କିନ୍ତୁ ସେହି ଦୃଷ୍ଟିରୁ ଦେଖିଲେ ଭାରତର ଜନଗଣନା କେବଳ ମୁଣ୍ଡଗଣତିରେ ସୀମାବଦ୍ଧ ନୁହେଁ। ଏହି ଜନ ସୁମାରିର ଅର୍ଥ ଅତ୍ୟନ୍ତ ବ୍ୟାପକ।

ଆପାତତଃ ଜନସଂଖ୍ୟା ସଂପର୍କିତ ସମସ୍ତ ତଥ୍ୟର ଗନ୍ତାଘର ହେଉଛି ଭାରତର ଜନଗଣନା ବିଭାଗ ଏବଂ ଏହି ଗନ୍ତାଘରଟି ସୁସଂଗଠିତ ତଥା ସମୃଦ୍ଧ ହୋଇଥାଏ ପ୍ରତି ଦଶନ୍ଧିରେ ଥରେ ଜନଗଣନା ହେଉଥିବା ଅବସରରେ ସଂଗୃହୀତ ତଥ୍ୟାବଳୀକୁ ଭିତ୍ତିକରି। କାରଣ ଏତିକିବେଳେ ସମଗ୍ର ଭାରତର ଅନ୍ଦିକନ୍ଦିରେ ଥିବା ଆବାଳ ବୃଦ୍ଧ ବନିତା ପ୍ରତ୍ୟେକଙ୍କ ପାଇଁ ବାସ୍ତବରେ ଅନେକ, ଅନେକ ତଥ୍ୟ ସଂଗୃହୀତ ହୋଇଥାଏ। ନବଜନ୍ମିତ ଶିଶୁଟିଏଠାରୁ ଆରମ୍ଭକରି କତରା ଧରିଥିବା ବୃଦ୍ଧଙ୍କ ପର୍ଯ୍ୟନ୍ତ ସମସ୍ତେ ଏଥିରେ ଅନ୍ତର୍ଭୁକ୍ତ ହୋଇଥାନ୍ତି। ଏପରିକି ନିର୍ଦ୍ଧାରିତ ଗଣନା ମୁହୂର୍ତ୍ତର ଅବ୍ୟବହିତ ପୂର୍ବରୁ ଅର୍ଥାତ୍ ୨୦୧୧ ମସିହା ମାର୍ଚ୍ଚମାସ ପହିଲା ତାରିଖର ଶୂନ୍ୟକାଳ (ଘ: ୦୦.୦୦)ରେ ଜନ୍ମ ହୋଇଥିବା ଶିଶୁଟି ବିଷୟରେ ମଧ୍ୟ, ଅନ୍ୟ ସମସ୍ତଙ୍କ ଭଳି, ପ୍ରତ୍ୟେକ ବିଷୟରେ ତଥ୍ୟ ସଂଗ୍ରହ ହୋଇଥାଏ।

ନିର୍ଦ୍ଧାରିତ ମୁହୂର୍ତ୍ତକୁ ଲକ୍ଷବିନ୍ଦୁ ମନେକରି ଫଳପ୍ରଦ ଭାବରେ ଏହି ବିରାଟ କାର୍ଯ୍ୟ ସମ୍ପାଦନ ପାଇଁ ଫେବୃଆରୀ ନଅ ତାରିଖରୁ ଆରମ୍ଭ କରି ମାସ ଶେଷଦିନର ମଧ୍ୟରାତ୍ରି ପର୍ଯ୍ୟନ୍ତ ଗଣନାକାରୀମାନେ ଜନଗଣନା ତଥ୍ୟସବୁ ସଂଗ୍ରହ କରିବେ। ପ୍ରାୟ ୨୦ ଦିନ ପୂର୍ବରୁ କାର୍ଯ୍ୟକ୍ରମ ଆରମ୍ଭ କରାଯାଉଥିବା ଦୃଷ୍ଟିରୁ ଇତି ମଧ୍ୟରେ କେତେ ପରିବାରରେ ସଂଘଠିତ ହୋଇଥିବା ପରିବର୍ତ୍ତନ ସବୁକୁ ସଂଶୋଧନ କରାଯିବା ଉଦ୍ଦେଶ୍ୟରେ ପୁନର୍ଗଣନାର ବ୍ୟବସ୍ଥା ହୋଇଛି।

ଆମ ଦେଶରେ ପ୍ରତିଦିନ ହଜାର ସଂଖ୍ୟକ ଶିଶୁ ଜନ୍ମ ହେଉଥିବା ବେଳେ ସେହିଭଳି ଅନେକ ମୃତ୍ୟୁ ମଧ୍ୟ ହୋଇଥାଏ କାଳର କରାଳ ଗତିରେ। ନିର୍ଦ୍ଧାରିତ ମୁହୂର୍ତ୍ତରେ ଦେଶର ସ୍ଥିତି ଆକଳନ ପାଇଁ ସେଭଳି ଘଟଣା/ଦୁର୍ଘଟଣା ସମୂହକୁ ରେକର୍ଡଭୁକ୍ତ କରାଯିବା ଉଦ୍ଦେଶ୍ୟରେ ପୁନର୍ଗଣନା କାଳର ବ୍ୟବସ୍ଥା। ନିର୍ଦ୍ଧାରିତ ମୁହୂର୍ତ୍ତର ପରବର୍ତ୍ତି ପାଞ୍ଚଦିନ ମଧ୍ୟରେ ସେହି ମୁହୂର୍ତ୍ତ ପୂର୍ବରୁ ସଂଗୃହୀତ ତଥ୍ୟ ସବୁର ସଂଶୋଧନ କରାଯିବ ଲକ୍ଷ୍ୟବିନ୍ଦୁକୁ ଭିତ୍ତିକରି। ଏତିକିବେଳେ ଫେବୃୟାରୀ ୨୮ ତାରିଖ ମଧ୍ୟରାତ୍ରିର ଶୂନ୍ୟକାଳ (ଘ: ୦୦:୦୦)ରେ ସୁଦ୍ଧା ଜନ୍ମଲାଭ କରିଥିବା ଶିଶୁଟି ବିଷୟରେ ସମସ୍ତ ତଥ୍ୟ ସଂଗ୍ରହ ହୋଇଥାଏ। ସେହିଭଳି ଇତି ମଧ୍ୟରେ ଗଣନାଭୁକ୍ତ ହୋଇସାରିଥିବା ପରିବାରର କୌଣସି ସଦସ୍ୟଙ୍କ ମୃତ୍ୟୁରେ ତାଙ୍କରି ନିମିତ୍ତ ଉଦ୍ଦିଷ୍ଟ ପୂରଣ ହୋଇ ସାରିଥିବା ତଥ୍ୟ ସବୁକୁ ରେକର୍ଡରୁ ବାଦ୍ ଦିଆଯାଇଥାଏ। ଅତଏବ ୨୦୧୧ ମସିହା ବେଳେ ହେଉଥିବା ଜନଗଣନାର ତଥ୍ୟସବୁ ସେହି ବର୍ଷ ଫେବୃୟାରୀ ମାସ ୨୮ ତାରିଖ ମଧ୍ୟରାତ୍ରିର ଶେଷ ମୁହୂର୍ତ୍ତ ଅଥବା ମାର୍ଚ୍ଚ ପହିଲା ତାରିଖର ପ୍ରଥମ ମୁହୂର୍ତ୍ତ (ଅର୍ଥାତ୍ ୦୦:୦୦ ଘଣ୍ଟା) ବେଳେ ସମଗ୍ର ଭାରତର ସ୍ଥିତି ସୂଚାଇ ଦେବ। ସେହି ଦୃଷ୍ଟି ଆସନ୍ତା ଜନଗଣନା ବାସ୍ତବରେ ଗୁରୁତ୍ୱପୂର୍ଣ୍ଣ।

୨୦୧୧ ମସିହାରେ ଅନୁଷ୍ଠିତ ହେବାକୁ ଥିବା ଜନଗଣନା ଏହି ଶହସ୍ରାବ୍ଦର ତଥା ଏକବିଂଶ ଶତାବ୍ଦୀର ଦ୍ୱିତୀୟ ଜନଗଣନା। ବାସ୍ତବରେ ଏହା ଆମ ଦେଶର ପଞ୍ଚଦଶ ଜନସୁମାରି। ପ୍ରଥମଥର ଆନୁଷ୍ଠାନିକ ଭାବେ ୧୮୭୧ ମସିହାରେ ଇଂରେଜ ଶାସିତ ଭାରତରେ ଏହା ଆରମ୍ଭ ହୋଇଥିଲା। ମୂଳ ଆବଶ୍ୟକତା ଥିଲା ଦେଶ ଶାସନ ପାଇଁ ଆଞ୍ଚଳିକ ଭିତ୍ତିରେ ଜନସଂଖ୍ୟା ଆକଳନ ଏବଂ ତତ୍ ସଂପର୍କୀୟ ତଥ୍ୟାବଳୀ। ଆମ ପାରିବାରିକ ଜୀବନରେ ଆମେ ଯେତେବେଳେ ସଂତାନଗଣଙ୍କ ବିବାହ, ବ୍ରତ ମୁଣ୍ଡନ କିମ୍ବା ଗୃହ ପ୍ରତିଷ୍ଠା ଭଳି ଛୋଟିଆ କାର୍ଯ୍ୟଟିଏ କରିବାକୁ ଯାଉ ତାହାର ସୂଚାରୁରୂପେ ପରିଚାଳନା ପାଇଁ ଯଥେଷ୍ଟ ପୂର୍ବରୁ

ଯୋଜନାକରି ପଦକ୍ଷେପମାନ ନେବାକୁ ହୋଇଥାଏ। ଅନେକେ ଆପଣାର ଦୈନନ୍ଦିନ ଜୀବନ ଯଥାର୍ଥ ଭାବେ ନିର୍ବାହ ପାଇଁ କ'ଣ, କିଭଳି କରିବାକୁ ହେବ ତାହା ପୂର୍ବରୁ ସ୍ଥିର କରିଥାନ୍ତି। ଠିକ୍ ସେହିଭଳି ଭାବରେ ଆପଣା ଅଧିକୃତ ଅଞ୍ଚଳକୁ ଆପଣାର ଇଚ୍ଛାନୁଯାୟୀ ପରିଚାଳନା ପାଇଁ ଆବଶ୍ୟକ ହେଉଥିବା ତଥ୍ୟ ସଂଗ୍ରହ ପାଇଁ ଜନସୁମାରି କରିବାକୁ ପଦକ୍ଷେପ ଗ୍ରହଣ କରିଥିଲେ ବ୍ରିଟିଶ୍ ସରକାର। ହେଲେ ସେତିକିବେଳେ ଏହାର ରୂପରେଖ ତଥା କାର୍ଯ୍ୟ ଶୈଳୀର ଚିତ୍ର ସ୍ପଷ୍ଟ କିମ୍ବା ସବୁଠି ସମାନ ଧରଣର ନଥିଲା। କୌଣସି ବୃହତ୍ କାର୍ଯ୍ୟ କଲାବେଳେ ଅନେକ ସମସ୍ୟା ସୃଷ୍ଟି ହୋଇଥାଏ। ୧୯୭୧କୁ ନିର୍ଦ୍ଧାରିତ କରାଯାଇଥିଲେ ସୁଦ୍ଧା ବାସ୍ତବରେ ଏହା ୧୮୬୭ ମସିହାରୁ ଆରମ୍ଭ ହୋଇ ଦୀର୍ଘ ପାଞ୍ଚବର୍ଷର ଅବଧି ମଧ୍ୟରେ, ଦେଶର ବିଭିନ୍ନ ସ୍ଥଳରେ, ବିଭିନ୍ନ ସମୟରେ ଜନସୁମାରି କରାଯାଇ ୧୮୭୨ରେ ପ୍ରାୟ ଶେଷ ହୋଇଥିଲା। ତଥାପି ଆଜିଭଳି ସାରାଦେଶର ସବୁ ଅଞ୍ଚଳ ସେଥିରେ ଅନ୍ତର୍ଭୁକ୍ତ ନଥିଲା। ତେବେ ସେଥିପାଇଁ ବ୍ୟବହୃତ ତଫସିଲଟି ହିଁ କେବଳ ସମାନ ଥିଲା। ତଥାପି ତାହା ଆଜି ପୃଥିବୀର ସର୍ବବୃହତ ଭାରତୀୟ ଜନଗଣନାର ଭିତ୍ତି ସ୍ଥାପନ କରିଥିଲା। ତତ୍ ପରବର୍ତ୍ତୀ କାଳରେ ୧୮୮୧ ମସିହାରେ ଯେଉଁ ଜନଗଣନା ହୋଇଥିଲା ସେଥିରେ ସମଗ୍ର ଭାରତବର୍ଷ ଅନ୍ତର୍ଭୁକ୍ତ ହୋଇଥିଲା ଏବଂ ସେହି ଏକା ସମୟରେ ସବୁ ଅଞ୍ଚଳରେ ଜନସୁମାରି ହୋଇଥିଲା। ତତ୍‌ପରଠାରୁ ଆମ ଦେଶରେ, ପ୍ରତି ଦଶବର୍ଷର ଅନ୍ତରାଳରେ ନିବଚ୍ଛିନ୍ନ ଭାବରେ ଜନଗଣନା ହୋଇଆସୁଛି ଆଜି ପର୍ଯ୍ୟନ୍ତ। ସମୟର ଅନୁରଣନରେ ତାହାରି ଗୁରୁତ୍ୱ ଏଭଳି ଭାବରେ ଅନୁଭୂତ ହୋଇଛି ଯେ, ଏପରିକି ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରବଳ ଘନଘଟା ମଧ୍ୟରେ ସୁଦ୍ଧା ଏବଂ ସମଗ୍ର ଭାରତୀୟ ଆକାଶରେ ଘନକଳା ବାଦଲ ଆଚ୍ଛାଦିତ ହୋଇ ରହିଥିଲେ ସୁଦ୍ଧା ଆମଦେଶରେ ସେହି କାର୍ଯ୍ୟକୁ ବନ୍ଦ ରଖାଯାଇନାହିଁ। ଏହାହିଁ ଭାରତୀୟ ଜନଗଣନାର ଇତିହାସ।

ଆହୁରି ଟିକିଏ ପଛକୁ ଫେରିଗଲେ ପୁରାତନ ରାଜରାଜୁଡ଼ା ଶାସନ କାଳରେ ମଧ୍ୟ ଜନସଂଖ୍ୟା ସଂପର୍କୀୟ ତଥ୍ୟାବଳୀର ଉପଯୋଗିତାକୁ ନେଇ ତଥ୍ୟ ସଂଗୃହୀତ ହେଉଥିବା ଆଲେଖ୍ୟ ମିଳେ। କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରୁ ପ୍ରମାଣ ମିଳେ ଯେ ରାଜ୍ୟରେ କର ଆଦାୟ କରାଯିବା ପାଇଁ ଜନସୁମାରିକୁ ରାଜ୍ୟ ଶାସନ ପଦ୍ଧତିରେ ଗ୍ରହଣ କରାଯାଇଥିଲା। ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ସମ୍ରାଟ ଅଶୋକ ରାଜ୍ୟଶାସନ ପାଇଁ ଜନସୁମାରିକୁ ଅତ୍ୟନ୍ତ ଆବଶ୍ୟକ ବୋଲି ମନେକରୁଥିବା ବିଷୟ ତାହାଙ୍କ ଶିଳାଲିପିଗୁଡ଼ିକରୁ ସ୍ପଷ୍ଟ। ଆମ ଦେଶର ରାଜା ମହାରାଜାମାନେ ମଧ୍ୟ "ଖାନାସୁମାରି" ଜରିଆରେ ଆପଣା ରାଜ୍ୟର ସଂଖ୍ୟା ଆକଳନ କରୁଥିବା ସ୍ପଷ୍ଟ ସୂଚନା ମିଳିଥାଏ।

ସେଦିନର ଖାନାସୁମାରି ଆଜି ନୂତନ ରୂପ ଗ୍ରହଣ କରି ସାରିଲାଣି। କେବଳ କର ଆଦାୟ ପାଇଁ ଜନସଂଖ୍ୟା ଆକଳନର ବେଳ ଆଉ ନାହିଁ। ବର୍ତ୍ତମାନ ଜନ ସମୁଦାୟର ସର୍ବୋତ ଉନ୍ନତି ପାଇଁ ତଥା ସାମାଜିକ, ସାଂସ୍କୃତିକ ଏବଂ ଅର୍ଥନୈତିକ ବିକାଶ ପାଇଁ ଆବଶ୍ୟକତାକୁ ଭିତ୍ତିକରି ପାଶ୍ଚାତ୍ୟ ରାଷ୍ଟ୍ରଗୁଡ଼ିକରେ ଆମର ବହୁ ପୂର୍ବରୁ ଜନଗଣନା କାର୍ଯ୍ୟ ଆରମ୍ଭ କରିସାରିଛନ୍ତି। କାହିଁ କେଉଁ ୧୭୯୦ ମସିହାରୁ ଆମେରିକା ଏବଂ ୧୮୦୧ ମସିହାରେ ଏହା ଇଂଲଣ୍ଡରେ ଆରମ୍ଭ ହୋଇସାରିଥିବା ବେଳେ ଆମ ଦେଶରେ ଏହା ୧୮୭୧ରେ ଆରମ୍ଭ ହୋଇଥିଲା। ସେହି ବେଳରୁ ଆରମ୍ଭ ହୋଇଥିବା ଜନଗଣନା ଅବିରତ ଭାବେ ପ୍ରତି ଦଶନ୍ଧିରେ ଥରେ ଅନୁଷ୍ଠିତ ହେଉଛି। ଦିନକୁ ଦିନ ଅଧିକ ମାର୍ଜିତ ହେଉଛି; ଅଧିକ ଶୃଂଖଳିତ ହେଉଛି; ଅଧିକ ସୁ-ସଂଯୋଜିତ ହେଉଛି। ଦେଶର ଆବଶ୍ୟକତାକୁ ଚାହିଁ ଏବଂ ତଥ୍ୟ ଉପଯୋଗ କରୁଥିବା ଅନୁଷ୍ଠାନ ତଥା ବ୍ୟକ୍ତି ବିଶେଷଙ୍କ ଚାହିଦାକୁ ଆଧାରକରି ନୂତନ ତଥ୍ୟ ସବୁ ସଂଗୃହୀତ ହେଉଛି ଏବଂ ବ୍ୟବହୃତ ହେଉଛି ଦେଶର ସାମୂହିକ ମଙ୍ଗଳ ପାଇଁ।

ଜନଗଣନା ବେଳେ ସଂଗୃହୀତ ହେଉଥିବା ତଥ୍ୟାବଳୀର ଗୁରୁତ୍ୱ ତଥା ବିନିଯୋଗ ସଂପର୍କରେ ଯଥେଷ୍ଟ ଜନ ସଚେତନତାର ଆବଶ୍ୟକତା ରହିଛି। ଗଣତାନ୍ତ୍ରିକ ରାଷ୍ଟ୍ର ଭାରତରେ ଜନପ୍ରତିନିଧିଙ୍କ ପାଇଁ ନିର୍ବାଚନ ମଣ୍ଡଳୀ ସ୍ଥିର କରାଯିବା ସରକାରଙ୍କ ଏକ ପ୍ରାଥମିକ କାର୍ଯ୍ୟ। କାରଣ ସରକାର ଗଠନ ପାଇଁ ନିର୍ବାଚିତ ଜନ ପ୍ରତିନିଧିମାନେ ଅପରିହାର୍ଯ୍ୟ। ଭୋଟରମାନଙ୍କ ସଂଖ୍ୟା ଭିତ୍ତିରେ ଏହା ସ୍ଥିର କରାଯାଇଥାଏ। ଏହି ଭୋଟରମାନଙ୍କ ସଂଖ୍ୟା ପ୍ରାପ୍ତ ହୋଇଥାଏ ପ୍ରତି ଦଶନ୍ଧିରେ ସଂଗ୍ରହ ହେଉଥିବା ଜନଗଣନାର ତଥ୍ୟାବଳୀରୁ। ଅତଏବ ନର୍ବାଚନ ମଣ୍ଡଳୀ ନିର୍ଦ୍ଧାରଣ ତଥା ସମୟକ୍ରମେ ପୁନଃ ନିର୍ଦ୍ଧାରଣର ମୁଖ୍ୟ ଉତ୍ସ ହେଉଛି ଜନଗଣନା। ସେହିଭଳି ସର୍ବଶିକ୍ଷା ଅଭିଯାନ ହେଉ ବା ହେଉ ଅନ୍ୟ ଯେ କୌଣସି ଶିକ୍ଷା ଯୋଜନା: ସେଥିପାଇଁ ବିଭିନ୍ନ ସ୍ତରର ସ୍କୁଲ ସ୍ଥାପନ ପାଇଁ ଆବଶ୍ୟକ ଶିଶୁ, କିଶୋର ତଥା ଯୁବ ବୟସର ଜନସଂଖ୍ୟା – ତାହା ପୁଣି ଆଞ୍ଚଳିକ ଭିତ୍ତିରେ। ନିର୍ଦ୍ଦିଷ୍ଟ ଅଞ୍ଚଳ ପାଇଁ ଆଞ୍ଚଳିକଭିତ୍ତିରେ ଏବଂ ବିଭିନ୍ନ ବୟସର ଜନସମୁଦାୟ ସଂପର୍କୀୟ ତଥ୍ୟ ମିଳିବ କେବଳ ଜନଗଣନା ନଥି

ପତ୍ରରୁ । ଶିକ୍ଷା ଭଳି ସ୍ୱାସ୍ଥ୍ୟ, ଗମନାଗମନର ବ୍ୟବସ୍ଥା ତଥା ସଂପ୍ରସାରଣ ପାଇଁ ମଧ୍ୟ ସମାନ ଆବଶ୍ୟକତା । ସ୍ୱାସ୍ଥ୍ୟକେନ୍ଦ୍ରଟିଏ କେଉଁଠି ପ୍ରତିଷ୍ଠା ହେବ ଏବଂ କେତେ ବ୍ୟକ୍ତି ତଦ୍ୱାରା ଉପକୃତ ହୋଇପାରିବେ ତାହାର ମୂଳ ଉତ୍ସ ହେଉଛି ଜନଗଣନା ରେକର୍ଡ । ପାଞ୍ଚଶହ ଜନସଂଖ୍ୟା ବିଶିଷ୍ଟ ଗ୍ରାମଗୁଡ଼ିକୁ ଗମନାଗମନର ସୁବିଧା ଯୋଗାଇ ଦେବାପାଇଁ ସ୍ଥିର କରିବା ପରେ କେଉଁ ବ୍ଲକ୍ ବା ତହସିଲ୍‌ରେ ସେଭଳି ଗ୍ରାମ ସଂଖ୍ୟାର ହିସାବ ନେଇଥିଲେ ଜନଗଣନା ରେକର୍ଡ଼ରୁ । ସେହିଭଳି ଭିନ୍ନକ୍ଷମର ବ୍ୟକ୍ତିବୃନ୍ଦଙ୍କ ସଂପର୍କରେ ତଥ୍ୟ । ଗତଥର ଭଳି ଏଥର ମଧ୍ୟ ଜନଗଣନା ବେଳେ ସେମାନଙ୍କ ପ୍ରକାର ଭେଦରେ ପୁଂଖାନୁପୁଂଖ ତଥ୍ୟ ସଂଗୃହୀତ ହେବ ଏବଂ ସେମାନଙ୍କର ବିକାଶ ପାଇଁ ସରକାରଙ୍କୁ ବିସ୍ତୃତ ତଥ୍ୟ ଯୋଗାଇଦେବ ।

ଝଡ଼, ବତାସ, ବନ୍ୟା, ବାତ୍ୟା, ମରୁଡ଼ି ପ୍ରପୀଡ଼ିତ ଓଡ଼ିଶାରେ ତଦ୍‌ଜନୀତ ଦୁର୍ଘଟଣାମାନ ପ୍ରାୟତଃ ସଂଘଠିତ ହୋଇଥାଏ ପ୍ରତିବର୍ଷ । ଦୁର୍ଘଟଣାଟିଏ ଘଟି ଯିବା ପରେ ପରେ ତୁରନ୍ତ ଆବଶ୍ୟକ ହୋଇଥାଏ ସଂପୃକ୍ତ ଅଞ୍ଚଳର ନର, ନାରୀ, ଶିଶୁଗଣଙ୍କ ସଂଖ୍ୟା, ସେମାନଙ୍କ ବଞ୍ଚିବାର ରାହା ଜୀବିକାର୍ଜନର ପନ୍ଥା ସମେତ ସେମାନଙ୍କ ବାସଗୃହ, ଜମିଜମା, ତଥା ସେସବୁ ଅଞ୍ଚଳରେ ଥିବା ଅନୁଷ୍ଠାନଗୁଡ଼ିକ ସଂପର୍କରେ ବିବରଣୀ । ପ୍ରପୀଡ଼ିତ ବ୍ୟକ୍ତିବୃନ୍ଦଙ୍କ ଥଇଥାନ ନିମନ୍ତେ ଆବାସସ୍ଥଳୀ ନିର୍ମାଣଠାରୁ ଆରମ୍ଭ କରି ସେମାନଙ୍କ ପାଇଁ ବିଭିନ୍ନ ଅର୍ଥନୈତିକ କାର୍ଯ୍ୟକ୍ରମ ପାଇଁ ଉଦ୍ଦିଷ୍ଟ ଅନେକ ସରକାରୀ ତଥା ବେସରକାରୀ ଉଦ୍ୟମକୁ ସଂପର୍କ କରାଇବା ପାଇଁ ଅନେକ ଅନେକ ଉପାଦେୟ ତଥ୍ୟ ପ୍ରତି ଦଶନ୍ଧୀୟ ଜନଗଣନା ବେଳେ ସଂଗୃହୀତ ବିବରଣୀର ଅଂଶ ବିଶେଷ । ସେହି ତଥ୍ୟକୁ ଆଧାର କରି ସରକାର କଳନା କରିଥାଆନ୍ତି ଚାଳ ଛପର ପରିବର୍ତ୍ତେ ଟାଇଲ ଘର କରିବା ପାଇଁ ସମ୍ବଳ ବ୍ୟବସ୍ଥା କରାଯାଇପାରିବ କି ନାହିଁ ଇତ୍ୟାଦି । ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ ଜନଗଣନା ବେଳେ କେବଳ ମୁଣ୍ଡ ଗଣନା ହୋଇ ନଥାଏ, ହୋଇଥାଏ ମଣିଷର ଜୀବନ ନିର୍ବାହ ପାଇଁ ଆବଶ୍ୟକ ବାସସ୍ଥାନ ବିଷୟରେ ମଧ୍ୟ ତଥ୍ୟ ସଂଗ୍ରହ: ଜନଗଣନା ସହିତ ସଂଯୁକ୍ତ ହୋଇଥାଏ ଗୃହଗଣନା ।

ଗୃହଗଣନା କାର୍ଯ୍ୟଟି ଜନଗଣନାର ଏକ ମୁଖ୍ୟ ଅଂଶ ହୋଇଥିଲେ ସୁଦ୍ଧା ଏହି ବିଶାଳ କାର୍ଯ୍ୟକ୍ରମକୁ ସହଜସାଧ୍ୟ କରାଯିବା ପାଇଁ ପ୍ରଥମ ପର୍ଯ୍ୟାୟରେ ଗୃହଗଣନା କାର୍ଯ୍ୟ ସଂପାଦନ କରାଯାଇଥାଏ । ଜନସୁମାରିର କିଛିକାଳ ପୂର୍ବରୁ ଏହା କରାଯାଇଥାଏ ବାସ୍ତବ ଜନସୁମାରୀର ଏକ ଆକଳନ ପାଇଁ । ତେବେ ଏତିକି ବେଳେ ହୋଇଥିବା ବାସଗୃହ ସଂପର୍କୀୟ ତଥ୍ୟସବୁ ଅନ୍ତିମ ପର୍ଯ୍ୟାୟଭୁକ୍ତ । ଦେଶର କୋଣ ଅନୁକୋଣରେ ଥିବା ପ୍ରତ୍ୟେକ ଗୃହକୁ ଏକ ଏକ ନମ୍ବର ଦିଆଯାଇ ଏହାର ବ୍ୟବହାର ତଥା କାନ୍ଥ-ଛାତ-ଚଟାଣ ଉପାଦାନ, ଏହାର ସ୍ୱତ୍ତ୍ୱ ଅର୍ଥାତ୍ ତାହା ଭଡ଼ାଘର କିମ୍ବା ନିଜର ଇତ୍ୟାଦି ବିବରଣୀ ସମେତ ଆହୁରି କେତେକ ଉପାଦେୟ ତଥ୍ୟ । ସେତିକିବେଳେ ସଂଗୃହୀତ ହୋଇଥାଏ ସେଥିରେ ବସବାସ କରି ରହୁଥିବା ମୋଟ ଲୋକସଂଖ୍ୟା । କାରଣ ଏହାରି ଆଧାରରେ ହିଁ ପ୍ରକୃତ ଜନସୁମାରି ପାଇଁ ପରବର୍ତ୍ତୀ କାର୍ଯ୍ୟପନ୍ଥା ଗ୍ରହଣ କରାଯାଇଥାଏ । ବର୍ତ୍ତମାନ ୨୦୧୧ ମସିହା ଜନଗଣନାର ଏହି ପର୍ଯ୍ୟାୟଟି ଆମ ଦେଶରେ ସମାପ୍ତ ହୋଇସାରିଛି ଏବଂ ଏହାରି ଆଧାରରେ ଆସନ୍ତା ଫେବୃଆରୀ ମାସରେ ହେବାକୁ ଥିବା ପରବର୍ତ୍ତି ପର୍ଯ୍ୟାୟ ପାଇଁ ଆୟୋଜନ ଚାଲିଛି ।

ଆମ ଦେଶର ଏହି ସର୍ବ ବୃହତ୍ ଶାସନଗତ ସରକାରୀ ତଥା ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟର ଆୟୋଜନ ମଧ୍ୟ ସେହିଭଳି ବିଶାଳ ଧରଣର । ଏଥିପାଇଁ ରାଜ୍ୟରେ ହଜାର ହଜାର ସଂଖ୍ୟକ କର୍ମଚାରୀ ନିଯୁକ୍ତ ହୋଇଥାଆନ୍ତି । ତୃଣମୂଳ ସ୍ତରରେ ଘର ଘର ବୁଲି ତଥ୍ୟ ସଂଗ୍ରହ ପାଇଁ ଗଣନାକାରୀ ଏବଂ ସେମାନଙ୍କୁ ତଦାରଖ କରିବା ପାଇଁ ବିଭିନ୍ନ ସ୍ତରରେ ଅନେକେ ନିୟୋଜିତ । ଏଥିରେ ପ୍ରତ୍ୟେକ ଜିଲ୍ଲାର କଲେକ୍ଟରଙ୍କଠାରୁ ଆରମ୍ଭ କରି ନିପଟ ମଫସଲର ପ୍ରାଥମିକ ଶିକ୍ଷକ ତଥା ଶିକ୍ଷାକର୍ମୀ ପର୍ଯ୍ୟନ୍ତ ଅନ୍ତର୍ଭୁକ୍ତ । କାର୍ଯ୍ୟକ୍ରମର ଗମ୍ଭୀରତା ଦୃଷ୍ଟିରୁ ପ୍ରତ୍ୟେକ ଗଣନାକାରୀଙ୍କ ପାଇଁ ଯଥା ସମ୍ଭବ କ୍ଷୁଦ୍ର ଅଞ୍ଚଳଟିଏ ନିର୍ଦ୍ଧାରଣ କରାଯାଇଥାଏ । ଗୃହ ଗଣନାବେଳେ ପ୍ରତ୍ୟେକ ଗଣନାକାରୀଙ୍କୁ ପ୍ରାୟ ଦେଢ଼ ଶହ ଗୃହକୁ ନମ୍ବର ଦେଇ ସେସବୁର ତଥ୍ୟ ସଂଗ୍ରହର ଭାର ଦିଆଯାଇଥିବା ବେଳେ ଜନସୁମାରି ବେଳେ ପ୍ରାୟ ୭୫୦ ଲୋକ ସଂଖ୍ୟା ବିଶିଷ୍ଟ ଅଞ୍ଚଳର ଦାୟିତ୍ୱ ଦିଆଯାଇଥାଏ ଏବଂ ୨ୟ ପର୍ଯ୍ୟାୟ ପାଇଁ କାର୍ଯ୍ୟକାଳ ଥାଏ ୨୧ ଦିନ । ସେମାନେ ପ୍ରତ୍ୟେକ ଗୃହକୁ ଯାଇ ସେଇଠି ସାଧାରଣତଃ ରହୁଥିବା ବ୍ୟକ୍ତି ବିଶେଷଙ୍କ ସଂପର୍କିତ ବିସ୍ତୃତ ବିବରଣୀ ସଂଗ୍ରହ କରିବେ । ସେହି କାର୍ଯ୍ୟ ପାଇଁ ଗଣନାକାରୀଗଣ ବିଶେଷ ଭାବେ ତାଲିମ ପ୍ରାପ୍ତ ମଧ୍ୟ ।

ହରିଜନ-ଆଦିବାସୀ ବହୁଳ ଆମ ରାଜ୍ୟର ଅନେକ ଅଞ୍ଚଳରେ ଜନ ସଚେତନତାର ଅଭାବରୁ ଜନଗଣନା ସଂପର୍କରେ ଅନେକେ ଅଜ୍ଞ । ତେଣୁ ଗଣନକାରୀଙ୍କର ଅନେକ ପ୍ରଶ୍ନକୁ

ଅନେକେ, ଏପରିକି କେତେକ ଶିକ୍ଷିତ ବ୍ୟକ୍ତି ମଧ୍ୟ, ଅବାନ୍ତର ମନେ କରିଥାଆନ୍ତି । ଗୃହରେ ସ୍ୱତନ୍ତ୍ର ରୋଷେଇଶାଳ, ପାଇଖାନା, ଗାଧୁଆଘର ଅଛିକି ନାହିଁ; ରୋଷେଇ ପାଇଁ ଜାଳେଣି ରୂପେ କ'ଣ ବ୍ୟବହାର ହେଉଛି; ଘରେ ଟେଲିଫୋନ୍, ଟେଲିଭିଜନ, ରେଡ଼ିଓ ଇତ୍ୟାଦି ଅଛିକି ନାହିଁ; ପାନୀୟଜଳ କେଉଁଠୁ ଆଣନ୍ତି ଏବଂ ମଇଳା ପାଣି ନିଷ୍କାସନ ପାଇଁ କି ବ୍ୟବସ୍ଥା ରହିଛି; ସାଇକଲଠାରୁ ଆରମ୍ଭ କରି କାର୍ ପର୍ଯ୍ୟନ୍ତ ଯାନବାହାନ ଅଛି କି ନାହିଁ - ଏଭଳି ଅନେକ ପ୍ରଶ୍ନ ସେଥିରେ ଅନ୍ତର୍ଭୁକ୍ତ । ବ୍ୟାଙ୍କ୍ କିମ୍ବା ପୋଷ୍ଟଅଫିସ୍‌ରେ ପରିବାରର କୌଣସି ସଦସ୍ୟଙ୍କ ନାମରେ ସଂଚୟ ଖାତା ଅଛିକି ନାହିଁ ଏବଂ ନାହିଁ ହୋଇଥିଲେ କେଉଁ କାରଣରୁ ତାହା ସମ୍ଭବ ହୋଇ ନାହିଁ ତାହା ଗଣନାକାରୀ କାହିଁକି ଜାଣିବାକୁ ଚାହିଁବେ ! ବାସ୍ତବରେ ଏହା ସଂପୂର୍ଣ୍ଣ ଭାବେ ବ୍ୟକ୍ତିଗତ । ଜଣକର ବ୍ୟାଙ୍କ୍ ଏକାଉଣ୍ଟ ସଂପର୍କରେ ଅନ୍ୟମାନେ ଜାଣିବା ଅନାବଶ୍ୟକ । ଏଠାରେ ମନେ ରଖିବାର କଥା ଜମାଖାତାରେ କେତେ ଟଙ୍କା ଗଚ୍ଛିତ ଅଛି ତାହା କିପରି ସଂଗ୍ରହ କରାଯାଇଛି ସେଇ ସଂପର୍କରେ ଗଣନାକାରୀ ପଚାରିବା ପାଇଁ କ୍ଷମତା ପ୍ରାପ୍ତ ନୁହଁନ୍ତି । କାରଣ ସେଭଳି ବ୍ୟକ୍ତିଗତ ତଥ୍ୟ ସଂଗ୍ରହ ଜନଗଣନାର ଉଦ୍ଦେଶ୍ୟ ନୁହେଁ । ଯଦି ବ୍ୟାଙ୍କ୍ କିମ୍ବା ପୋଷ୍ଟଅଫିସ୍‌ରେ ସଂଚୟଖାତା ଖୋଲାଯିବା ପାଇଁ ଥିବା ସମସ୍ୟା ସରକାରୀ ସହାୟତାରେ ସମାଧାନର ସୂତ୍ର ହୋଇପାରେ ତାହା ହେଲେ ସେଥିପାଇଁ ଉଦ୍ୟମ କରାଯିବା ଉଦ୍ଦେଶ୍ୟରେ ସଂଯୋଜିତ । ପୁଣି ମୁଖ୍ୟତଃ ସେହି ସବୁ ବ୍ୟକ୍ତିଗତ ମନେହେଉଥିବା ପ୍ରଶ୍ନାବଳୀ ବାସ୍ତବରେ ସାମୂହିକ ଭାବେ ଆମ ସାମାଜିକ ସ୍ତର ନିର୍ଣ୍ଣାୟକ । ଏହି ମୌଳିକ ପ୍ରଶ୍ନକୁ ଆମେ ଉପଲବ୍ଧି କରିବାକୁ ତଥା କରାଇବାକୁ ହେବ । ପରିଣାମତଃ ଜନସାଧାରଣ ଆସନ୍ତା ଜନଗଣନା ବେଳେ ନିଶ୍ଚିତ ରୂପେ ସମ୍ବେଦନଶୀଳ ପ୍ରଶ୍ନଗୁଡ଼ିକର ଉତ୍ତର ଦେବାକୁ କୁଣ୍ଠିତ ହେବେନାହିଁ; ନିଶ୍ଚିତ ରୂପେ କୁଣ୍ଠା ପ୍ରକାଶ କରିବେ ନାହିଁ ଈଶ୍ୱରଙ୍କ ଅଭିଶାପ ବୋଲି ମନେକରୁଥିବା ଭିନ୍ନକ୍ଷମ / ଅକ୍ଷମ ବ୍ୟକ୍ତିଙ୍କ ସଂପର୍କରେ ମୁକ୍ତ ଭାବରେ ତଥ୍ୟ ପ୍ରଦାନ କରିବା ପାଇଁ ।

ପୁଣି ଏଠାରେ ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟର ଅବତାରଣା କରାଯାଇପାରେ । ଜନଗଣନାବେଳେ ପ୍ରତିଟି ପରିବାରର ପ୍ରତ୍ୟେକ ବ୍ୟକ୍ତିଙ୍କର ନାମ, ବୟସ, ଲିଙ୍ଗ, ପରିବାରର ମୁଖ୍ୟଙ୍କ ସହ ସଂପୃକ୍ତି, ସାକ୍ଷରତା, କର୍ମ ନିଯୁକ୍ତି, ଜନ୍ମସ୍ଥାନ, ସ୍ଥାନାନ୍ତରଗମନ ପ୍ରଭୃତିର ବିଶେଷ ବିବରଣୀ ବ୍ୟକ୍ତିଗତ ସ୍ତରରେ ସଂଗୃହୀତ ହେଉଥିଲେ ମଧ୍ୟ ସେହି ସମସ୍ତ ତଥ୍ୟ ଗୋପନୀୟ । ରାଜ୍ୟର ହଜାର ହଜାର ଜନଗଣନାକାରୀ ପ୍ରତ୍ୟେକ ବ୍ୟକ୍ତିଙ୍କଠାରୁ ଏହା ସଂଗ୍ରହ କରୁଥିବାବେଳେ ଏବଂ ବହୁ ଅଧିକାରୀ ସେଇ ସବୁକୁ ବିଭିନ୍ନ ସ୍ତରରେ ଯାଞ୍ଚ କରୁଥିବା ଯୋଗୁଁ ତଥ୍ୟ ସବୁର ଗୋପନୀୟତା ସଂପର୍କରେ ଆମ୍ଭମାନଙ୍କ ମଧ୍ୟରେ ଅନେକଙ୍କ ସନ୍ଦେହ । ଏହି ପରିପ୍ରେକ୍ଷୀରେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଜନଗଣନା ବେଳେ ଥରେ ତଥ୍ୟ ସବୁ ସଂଗୃହୀତ ହୋଇଯିବା ପରେ ସେଥିରେ ଉଲ୍ଲେଖ ରହିଥିବା ନାମ ଇତ୍ୟାଦି ଗୁଡ଼ିକର ସତ୍ତା ରହି ନଥାଏ; ଜନ ସମୁଦାୟର ବିବରଣୀ ରହିଥାଏ ସାମଗ୍ରିକ ଭାବେ ଏବଂ ଆଞ୍ଚଳିକ ଭାବେ । ଉଦାହରଣ ସ୍ୱରୂପ ଗୋଟିଏ ଗାଆଁରେ / ସହରରେ / ସହରର ଗୋଟିଏ ୱାର୍ଡରେ କେତେ ପୁରୁଷ, ମହିଳା, ସାକ୍ଷର-ନିରକ୍ଷର, କିଶୋର-କିଶୋରୀ, ଚାଷୀ, ମୂଲିଆ କେତେ ହରିଜନ-ଆଦିବାସୀ ଏବଂ ସେମାନଙ୍କ ମଧ୍ୟରେ କେଉଁ ସଂପ୍ରଦାୟର କେତେ ବ୍ୟକ୍ତି ଅଛନ୍ତି ତାହାର ମୋଟ ସଂଖ୍ୟା କେବଳ ସରକାରୀ ଭାବେ ଦିଆଯାଇପାରିବ । ଅଥଚ ସେହିମାନେ କିଏ କାହାରିକି ନାମ କିମ୍ବା ତାଲିକା ପ୍ରଦାନ କରାଯାଇ ପାରିବ ନାହିଁ ଏବଂ ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଜନଗଣନା କାଳରେ ସଂଗୃହୀତ କୌଣସି ବ୍ୟକ୍ତିଗତ ତଥ୍ୟ ଆମ ଦେଶରେ ପ୍ରଚଳିତ କୌଣସି ଆଇନ ଅଦାଲତରେ ମଧ୍ୟ ଗ୍ରହଣଯୋଗ୍ୟ ନୁହେଁ । ଅତଏବ କୌଣସି ଉପାୟରେ ଯଦି ଜଣେ ବ୍ୟକ୍ତି ଜନଗଣନାର ନଥି ପତ୍ରରୁ କାହାର ବ୍ୟକ୍ତିଗତ ତଥ୍ୟ ସଂଗ୍ରହ କରିବାରେ ସମର୍ଥ ହୁଅନ୍ତି ଏବଂ ତାହାକୁ ଆପଣାର ସ୍ୱାର୍ଥ ସାଧନ ପାଇଁ ଦେଶର କୌଣସି କୋର୍ଟ କଚେରୀରେ ଦାଖଲ କରନ୍ତି ତାହା କୌଣସି ଠାରେ ବି ସାକ୍ଷ୍ୟ ରୂପେ ଗ୍ରହଣଯୋଗ୍ୟ ହେବନାହିଁ । ସେଥିପାଇଁ ପାର୍ଲ୍ୟାମେଣ୍ଟରେ ଆଇନ ପ୍ରଣୟନ ହୋଇସାରିଛି । ଅତଏବ ଆସନ୍ତା ଜନଗଣନାବେଳେ ଗଣନାକାରୀଙ୍କୁ ନିର୍ଭୟରେ ତଥ୍ୟ ଯୋଗାଇ ଦିଆଯାଇପାରେ ।

ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ ବିଗତଥର ଗୁଡ଼ିକ ଭଳି ଏଥର ମଧ୍ୟ ଆଦିବାସୀ/ହରିଜନମାନଙ୍କ ପାଇଁ ଗୋଷ୍ଠୀଭିତ୍ତିକ ଜନସୁମାରି କରାଯିବ । ଦେଶର ଅନ୍ୟାନ୍ୟ ସବୁ ସଂପ୍ରଦାୟଭୁକ୍ତ ବ୍ୟକ୍ତିଙ୍କ କ୍ଷେତ୍ରରେ ଜାତିଭିତ୍ତିକ ଜନଗଣନା ବର୍ତ୍ତମାନ ନ ହୋଇ ଏକ ସ୍ୱତନ୍ତ୍ର ପର୍ଯ୍ୟାୟରେ କରାଯିବା ପାଇଁ ଯୋଜନା ରହିଛି । ୨୦୧୧ ମସିହା ଜନଗଣନା କାଳରେ ସଂଗୃହୀତ ତଥ୍ୟାବଳୀ ସବୁ ଆସନ୍ତା ୨୦୨୧ ମସିହା ପର୍ଯ୍ୟନ୍ତ ବ୍ୟବହୃତ ହେବ । ସେହି ଦୃଷ୍ଟିରୁ ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଆହୁରି ଅଧିକ ଗୁରୁତ୍ୱପୂର୍ଣ୍ଣ ଏଇଥି ପାଇଁ ଯେ ଏଗୁଡ଼ିକର ବାସ୍ତବ ବ୍ୟବହାରକାରୀ ଯଥା କେନ୍ଦ୍ର ଏବଂ ରାଜ୍ୟ ସରକାରଙ୍କ ବିଭିନ୍ନ ବିଭାଗ, ଅନେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ, ସମାଜର ହିତ

ଉଦ୍ଦେଶ୍ୟରେ ଗଠିତ ବିଭିନ୍ନ ସେବାକାରୀ ଅନୁଷ୍ଠାନ ତଥା ସର୍ବୋପରି ଗବେଷକ ଏବଂ ବୁଦ୍ଧିଜୀବୀଗଣ ଏହି ସବୁ ତଥ୍ୟକୁ ସେମାନଙ୍କର ବଳିଷ୍ଠ ଭିତ୍ତିଭୂମି ରୂପେ ଗ୍ରହଣ କରିଥାନ୍ତି । ଦେଶର ଯୋଜନା କମିଶନ୍ ତ ଏହାର ମୁଖ୍ୟ ପ୍ରୟୋଗକାରୀ ସଂସ୍ଥା । ଭାରତ ଭଳି ଏକ ବିକାଶଶୀଳ, ଗଣତାନ୍ତ୍ରିକ ରାଷ୍ଟ୍ରରେ ଜନସମୁଦାୟର ସାମୁହିକ ଉନ୍ନତି ପାଇଁ ଅଙ୍ଗୀକାରବଦ୍ଧ ସରକାରଙ୍କର ପଞ୍ଚବାର୍ଷିକ ଯୋଜନାଗୁଡ଼ିକ ସମେତ ଅନ୍ୟାନ୍ୟ ସରକାରୀ ତଥା ବେସରକାରୀ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଥାଏ ସେ ସବୁର ସଫଳ ରୂପାୟନ ନିର୍ଭରକରେ ସେସବୁର ପ୍ରସ୍ତୁତିପର୍ବରେ ବ୍ୟବହୃତ ହେଉଥିବା ସୁଦୃଢ଼ ଭିତ୍ତିଭୂମି ଉପରେ । ସେଇ ଭିତ୍ତିଭୂମି ହିଁ ଜନଗଣନାବେଳେ ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ସଂଗୃହୀତ ହେଉଥିବା ତଥ୍ୟାବଳୀ ।

ସେଇ କାରଣରୁ ହିଁ ଜନସୁମାରିବେଳେ ନିଘଂଚ ଜଙ୍ଗଲ କିମ୍ବା ସୁଉଚ୍ଚ ପାହାଡ଼ ଉପରେ ରହୁଥିବା ଦୁଇ ଚାରୋଟି କୁଡ଼ିଆ ବିଶିଷ୍ଟ କେଉଁ ଆଦିବାସୀ ଗାଆଁର ନଙ୍ଗଳା ପିଲାଙ୍କଠାରୁ ଆରମ୍ଭକରି ଗାଆଁ ତଥା ସହରମାନଙ୍କରେ ରହୁଥିବା ଗୃହହୀନ ପରିବାରର ସଦସ୍ୟମାନଙ୍କୁ ମଧ୍ୟ ତଥ୍ୟ ସଂଗ୍ରହ ଦୃଷ୍ଟିରୁ ସମାନ ଗୁରୁତ୍ୱ ପ୍ରଦାନ କରାଯାଇଛି । ଖାଦ୍ୟାଭାବ ଯୋଗୁଁ ଆମ୍ବ ଟାକୁଆକୁ ଆଶ୍ରାକରି ରହୁଥିବା ଆଦିମ ଆଦିବାସୀ ଜୁଆଙ୍ଗ, ବଣ୍ଡା, ମାଙ୍କଡ଼ିଆଙ୍କଠାରୁ ଆରମ୍ଭ କରି ବହୁତଳ କୋଠାରେ ବସବାସ କରୁଥିବା କୋଟିପତି ତଥା ବିଭିନ୍ନ ଅତିଥିଶାଳା, ଲଜିଂ କିମ୍ବା ତାରକା ହୋଟେଲମାନଙ୍କରେ ରହୁଥିବା ସମସ୍ତେ ସମାନ ଜନଗଣନା ପାଇଁ । ଜେଲ୍‌ର ରୁଦ୍ଧ କୋଠରୀରେ ଆଜୀବନ ରହୁଥିବା ବନ୍ଦୀମାନଙ୍କ ସମେତ ଆଜି ଏଠିତ କାଲି ସେଠି ରହି ପେଟ ପୋଷୁଥିବା ଯାଯାବର, ଭିକ୍ଷୁକ ପ୍ରଭୃତି ବ୍ୟକ୍ତିଙ୍କୁ ମଧ୍ୟ ଯଥାଯଥ ଭାବରେ ଗଣନାଭୁକ୍ତ କରିବାଲାଗି ସବୁ ଗଣନାକାରୀ ସତର୍କ । ପରିଣାମତଃ ଆସନ୍ତା ଫେବୃୟାରୀ ମାସରେ ହେବାକୁ ଥିବା ଜନଗଣନା ବେଳେ ସମଗ୍ର ଭାରତର ହିମାଳୟରୁ କୁମାରିକା ପର୍ଯ୍ୟନ୍ତ ସ୍ଥାନରେ ଯେପରି ଜଣେ ମଧ୍ୟ ବ୍ୟକ୍ତି ଜନଗଣନାରୁ ବାଦ ପଡ଼ିବେ ନାହିଁ କିମ୍ବା ଦୁଇଥର ଗଣନାଭୁକ୍ତ ହେବେ ନାହିଁ ସେଥିପାଇଁ ସମସ୍ତ କର୍ମଚାରୀ ସଚେତନ ।

ଅତଏବ ଦେଶର କଲ୍ୟାଣ ପାଇଁ ଅପରିହାର୍ଯ୍ୟ ଜନଗଣନାକୁ, ଆପଣାକୁ ଭାରତବାସୀ ବୋଲି ଗର୍ବ କରୁଥିବା, ଦେଶର ଜନଗଣ ସର୍ବାନ୍ତକରଣରେ ଏବଂ ଅକୁଣ୍ଠିତ ଭାବେ ସହାୟତା ଦେବା ପରମ କର୍ତ୍ତବ୍ୟ ବୋଲି ମନେ କରିବା ଉଚିତ ।

*ଘର ନଂ-ଡି ୧*
*ମହିଳା ପଲିଟେକ୍‌ନିକ୍ ପରିସର, ୟୁନିଟ୍-୮*
*ଭୁବନେଶ୍ୱର-୧୨*



ବୌଦ୍ଧ ଜିଲ୍ଲା ପ୍ରଶାସନ ଗହଣରେ ଜନଗଣନା-୨୦୧୧ ସମ୍ବନ୍ଧୀୟ ପଥପ୍ରାନ୍ତ ନାଟକର ଆୟୋଜକ ମଣ୍ଡଳୀ ।

# ଜନଗଣନା ନୁହେଁ - ଜନଚେତନା

*ଡକ୍ଟର ପଦ୍ମନାଭ ସାହୁ*

ପୃଥିବୀର ଅନ୍ୟତମ ଶ୍ରେଷ୍ଠ ଜନଗଣନା ରୂପେ ବିବେଚିତ ଭାରତର ପଞ୍ଚଦଶ ତଥା ସ୍ୱାଧୀନତା ପରବର୍ତ୍ତୀ ସପ୍ତମ ଜନଗଣନା ସମୟ ଆସି ଦାଣ୍ଡ ଦୁଆରେ। ଅତୀତର ବହୁ ଅଭିଜ୍ଞତା, ସତ୍ୟ ଓ ତଥ୍ୟକୁ ପ୍ରକାଶ କରି ଏହା ପୁଷ୍କଳ। ଦୀର୍ଘ ୧୪୦ ବର୍ଷରୁ ଅଧିକ କାଳରୁ ଏହାର ପ୍ରାଥମିକ ଉଦ୍ୟମର ପ୍ରାରମ୍ଭ ହୋଇଥିଲେ ହେଁ ଆଜିର ସମସ୍ୟାସଂକୁଳ ଜନାକୀର୍ଣ୍ଣ ଭାରତବର୍ଷ ପାଇଁ ଜନଗଣନାର ଉପାଦେୟତା ଅତ୍ୟନ୍ତ ଜରୁରୀ। କାରଣ ଜନଗଣନା କରି ଜନସମସ୍ୟା ଜାଣି ଜନଜାଗୃତି ଆଣି ଜନତାର ଜୟକେତନ ଉଡ଼ାଇବା ଲାଗି ଏହା ଅଭିପ୍ରେତ। ଆଧୁନିକ ଭାରତ ଗଠନ ଲାଗି ଉଦ୍ଦିଷ୍ଟ ପଞ୍ଚବାର୍ଷିକ ଯୋଜନାର ମୂଳ ଭିତ୍ତି ଭାବେ ଜନଗଣନାର ସ୍ଥାନ ସୁନିର୍ଦ୍ଦିଷ୍ଟ ଏବଂ ମହାନ ଜାତୀୟକାର୍ଯ୍ୟ ରୂପେ ପରିଗୃହୀତ।

ବହୁ ଦିନରୁ ଭାରତୀୟ ଜନଗଣନାର ଶତବାର୍ଷିକୀ ପୂର୍ଣ୍ଣ ହେଲାଣି। ୧୯୩୧ରେ Hutton ଓ ୧୯୪୧ରେ Yeats ସାହେବ (Census Commissioner) ଜନଗଣନାକୁ ଏକ ସ୍ୱୟଂ ସଂପୂର୍ଣ୍ଣ ବିଭାଗ କରିବା ସପକ୍ଷରେ ମତଦାନ କରିଥିଲେ କିନ୍ତୁ ୧୮୭୧-୭୨ ମସିହାରୁ ଏହା ସରକାରୀ ନିର୍ଦ୍ଦେଶରେ ବିଦ୍ଧିବଦ୍ଧଭାବେ ଆରମ୍ଭ ହୋଇଥିଲା। ଏହାପରେ ୧୮୮୧ରୁ ଧାରାବାହିକ ଭାବେ ଏହି କାର୍ଯ୍ୟ ସମ୍ପନ୍ନ ହୋଇଆସୁଛି। ଏହି ଗଣନାରୁ ପ୍ରତୀୟମାନ ହୋଇଥିଲା ଯେ, ଜନସଂଖ୍ୟା ଦୃଷ୍ଟିରୁ ଭାରତ ଦ୍ୱିତୀୟ ବୃହତ୍ତମ ଦେଶ। ବହୁଜାତି, ବହୁଧର୍ମ, ବହୁରୀତି ନୀତି ନେଇ ଏହା ସମୃଦ୍ଧ। ଆଜିର ଜନଗଣନା ପୂର୍ବଦିନ ଭଳି କେବଳ ମୁଣ୍ଡଗଣତି ହୋଇ ରହିନାହିଁ ବରଂ ଏହା ଆଜିର ଜଟିଳ ସମାଜରେ ପରିବର୍ତ୍ତନର ରୂପରେଖକୁ ପ୍ରଦର୍ଶିତ କରିବା ସଂଗେ ସଂଗେ ସାମାଜିକ ପୁନର୍ଗଠନ ତଥା ଅର୍ଥନୈତିକ ସ୍ଥିତି ଆକଳନ କରି ବିଭିନ୍ନ ମାନବିକ ସମସ୍ୟା ଓ ତା'ର ସମାଧାନ କରିବାର ସୁଯୋଗ ନେଇ ଆସିଅଛି। ଏଣୁ ଏହାର ଉପଯୋଗିତାକୁ ଲକ୍ଷ୍ୟକରି ତତ୍‌କାଳୀନ ଉପ-ପ୍ରଧାନମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍ କହିଥିଲେ - "Census affords an opportunity for Government to reach every home throughout the length and breadth of this country..."

ଆଜିର ଜନଗଣନା ଲାଗି ଉଦ୍ଦିଷ୍ଟ ତଥ୍ୟାବଳୀ ଦେଶର ବହୁ ବୁଦ୍ଧିଜୀବୀ ଓ ଚିନ୍ତାନାୟକଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇ ଆଜି ଏହା ବ୍ୟାପକ ରୂପ ଧାରଣ କରିଅଛି। ସଦ୍ୟଜାତ ସଂତାନ ସଂତତିଙ୍କଠାରୁ ବୃଦ୍ଧ ବନିତା ପର୍ଯ୍ୟନ୍ତ ସମସ୍ତଙ୍କ ପୂର୍ଣ୍ଣାଙ୍ଗ ବିବରଣୀ ସଂଗ୍ରହ କରିବାକୁ ଏହା ସଚେଷ୍ଟ। 'ଘର ଗଣା ଗଲେ ମଣିଷ ଗଣାଯିବ' ନ୍ୟାୟରେ ଏହାର ପ୍ରାଥମିକ ପଦକ୍ଷେପ ସ୍ୱରୂପ କିଛି ଦିନ ପୂର୍ବରୁ ସକଳ ପ୍ରକାର ମଣିଷ ରହିବା ସ୍ଥାନକୁ ଚିହ୍ନଟ କରାଯାଇ ତାଲିକାଭୁକ୍ତ କରାଯାଇଅଛି। ନାମ, ଧାମ, କାମ ବ୍ୟତୀତ, କ୍ଷୁଦ୍ରଶିଳ୍ପଠାରୁ ବୃହତ୍ ପ୍ରତିଷ୍ଠାନର ଗଣନା ସହ ଗୃହର ଅବସ୍ଥା, ସ୍ୱାସ୍ଥ୍ୟ, ଶିକ୍ଷା, ପାନୀୟ ଜଳ, ଶୌଚାଳୟ, ହାଟବଜାର, ଗମନାଗମନ, ଜାଳେଣି ଆଦିର ସୁବିଧା ସୁଯୋଗ ଅନେକ ବିଷୟରେ ପ୍ରଶ୍ନ ପଚରା ଯାଇ ତଥ୍ୟ ସଂଗୃହୀତ ହୋଇ ସେହି ତଥ୍ୟକୁ ଗୋପନୀୟ ରଖାଯିବାର ସମସ୍ତ ପ୍ରତିଶ୍ରୁତି ଦେଇ ଆସିଅଛି।

ସୁଚିନ୍ତିତ ଲକ୍ଷ୍ୟ ସାଧନ ପାଇଁ ଫେବୃୟାରୀ ୯ ରୁ ୨୮ ଅର୍ଥାତ୍ ୨୦ ଦିନ ଜନଗଣନାକାଳ ଭାବେ ଧାର୍ଯ୍ୟ କରାଯାଇଅଛି। ସମସ୍ତ ସ୍ଥାୟୀ ବାସିନ୍ଦାଙ୍କୁ ୯ରୁ ୨୮ ମଧ୍ୟରେ ଓ ୨୮ ରାତ୍ର ଗୃହହୀନ ବ୍ୟକ୍ତିଙ୍କ ଚିହ୍ନଟ କରାଯାଇ ୨୦୧୧ ମାର୍ଚ୍ଚ ୧ ତାରିଖ ଶୂନ୍ୟ କାଳ (୦୦.୦୦ ଘଣ୍ଟା) ସୁଦ୍ଧା ଦେଶର ଜନସଂଖ୍ୟା ସମ୍ବନ୍ଧୀୟ ନିର୍ଦ୍ଦିଷ୍ଟ ଚିତ୍ର ମିଳିବା ପାଇଁ ସ୍ଥିରୀକୃତ କରାଯାଇଛି।

ଏହି ପରିପ୍ରେକ୍ଷୀରେ ବୈଜ୍ଞାନିକ ପଦ୍ଧତିରେ ପରିକଳ୍ପିତ ବର୍ତ୍ତମାନର କେତେକ ମୌଳିକ ପ୍ରଶ୍ନକୁ ଦେଖିଲେ ଏହାର ମହତ୍ୱ ଓ ଗୁରୁତ୍ୱ ପ୍ରତି ଏକ ସମ୍ୟକ ଧାରଣା ସୃଷ୍ଟି ହୋଇଥାଏ। ବ୍ୟକ୍ତି ଓ

ବୃତ୍ତିର ନିର୍ଣ୍ଣୟ ପାଇଁ - ବ୍ୟକ୍ତି ପୁରୁଷ କି ସ୍ତ୍ରୀ, ତା'ର ବୟସ, ବୈବାହିକ ଅବସ୍ଥା, ମାତୃଭାଷା, ଜାଣିଥିବା ଅନ୍ୟ ଦୁଇଟି ଭାଷା, ଧର୍ମ, ଜାତି, ସାକ୍ଷର-ନିରକ୍ଷର, ସ୍ଥାନାନ୍ତର ଗମନ, ଭିନ୍ନକ୍ଷମ ତଥା କର୍ମଜୀବନର ବିଶଦବିବରଣୀ ଇତ୍ୟାଦି ବିଷୟରେ ତନ୍ନ ତନ୍ନ ପ୍ରଶ୍ନ କରାଯାଇ ଉତ୍ତର ସଂଗ୍ରହ କରାଯାଇଥାଏ। ଏହିପରି ବ୍ୟକ୍ତିରୁ ଆରମ୍ଭ କରି ପରିବାର, ଗ୍ରାମ, ସହର, ଥାନା, ରାଜ୍ୟ ଏବଂ ରାଜ୍ୟରୁ ଦେଶ କ୍ରମରେ ତଥ୍ୟ ସଂଗ୍ରହ କରାଯିବାର ଏକ ସୁନିପୂଣ କୌଶଳ ପ୍ରୟୋଗ କରାଯାଇଅଛି। ପୁଣି ସ୍ୱାଧୀନ ଭାରତବର୍ଷର ଗଣତି ପରବର୍ତ୍ତୀ ସମୟର ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ପାଇଁ କମ୍ପ୍ୟୁଟରର ପ୍ରଚଳନ କରାଯାଇ ICR ଟେକ୍ନୋଲୋଜିକୁ ପ୍ରୟୋଗ କରାଯାଇଛି। କିନ୍ତୁ ଏସବୁର ସଫଳ ରୂପାୟନ ଗଣନାକାରୀ ତଥା ଆମ ଦେଶର ଜନସାଧାରଣଙ୍କ ସଚେତନତା ଓ ସହଯୋଗ ଉପରେ ନିର୍ଭର କରେ। ଅତଏବ ଏହାର ବିଶେଷତ୍ୱ ଉପଲବ୍ଧି ପାଇଁ ସରକାରୀ ସ୍ତରରୁ ବେସରକାରୀ ସ୍ତର ପର୍ଯ୍ୟନ୍ତ ଅର୍ଥାତ୍ ଯୋଜନାକାରୀ, ନିର୍ବାଚନ ଅଧିକାରୀଠାରୁ ଗବେଷକ, ବ୍ୟବସାୟୀ, ଶିଳ୍ପପତି ତଥା ସାଧାରଣ ପର୍ଯ୍ୟନ୍ତ; ରାଜନୈତିକ ସ୍ତରରୁ ଅଣରାଜନୈତିକ ସ୍ତର ପର୍ଯ୍ୟନ୍ତ ସଚେତନ ହୋଇ ଜନଗଣନା କାର୍ଯ୍ୟ ସୂଚାରୁ ରୂପେ ସମାହିତ କରାଇ ପାରିଲେ, ଆମ ସମାଜର ଆର୍ଥିକ ମାନଦଣ୍ଡ ଓ ସାମାଜିକ ଅବସ୍ଥାକୁ ଯଥାର୍ଥ ଭାବେ ଉପଲବ୍ଧି କରିହେବ।

ଜନାକୀର୍ଣ୍ଣ ଭାରତବର୍ଷର ଜନଶକ୍ତି ହିଁ ମୁଖ୍ୟ ଶକ୍ତି। ମାନବ ସଂବଳ ହିଁ ଆମର ମୂଳ ସଂବଳ। ଏଣୁ ସଂପ୍ରତି ଏହାକୁ ଆଧାର କରି ଜନସ୍ୱାସ୍ଥ୍ୟ, ନିର୍ବାଚନ ପ୍ରକ୍ରିୟା, ନିରକ୍ଷରତା ଦୂରୀକରଣ, ପରିବାର କଲ୍ୟାଣ ଭଳି ବହୁ ସରକାରୀ ଓ ବେସରକାରୀ ସ୍ତରରେ ସଂଗଠନମୂଳକ କାର୍ଯ୍ୟକ୍ରମର ରୂପାୟନ ହୋଇପାରିବ। ଏଣୁ ଏହି ତଥ୍ୟ ଯୋଗାଣ ଓ ତଥ୍ୟ ସଂଗ୍ରହ ଯେପରି ଗୁରୁତ୍ୱପୂର୍ଣ୍ଣ ଏହାର ସୁସଂପାଦନା ସେହିପରି ଦେଶ ଓ ଜାତିପକ୍ଷେ ଏକାନ୍ତ ଗର୍ବ ଓ ଗୌରବର ବିଷୟ।

ଦେଶକୁ ସୁଦୃଢ଼ କରିବା ଆମର ପ୍ରଥମ କର୍ତ୍ତବ୍ୟ। ସେଥିପାଇଁ ଆବଶ୍ୟକ ସୁଚିଂତିତ ଯୋଜନା ଏବଂ ଏକ ସଠିକ୍ ପରିସଂଖ୍ୟାନ। ଜନଗଣନା ମାଧ୍ୟମରେ ସେଭଳି ସଠିକ୍ ତଥ୍ୟ ସଂଗ୍ରହ ପାଇଁ ଉଦ୍ୟମ କରାଯାଉଛି। ଅତଏବ ସତ୍ୟନିଷ୍ଠ ଓ ତଥ୍ୟନିଷ୍ଠ ଉତ୍ତର ଦେଇ ଏହି ତଥ୍ୟ ସଂଗ୍ରହକୁ ଆମ ଦେଶର ଜନସାଧାରଣ ସାଗ୍ରହେ ସହଯୋଗ କରିବା ଆବଶ୍ୟକ। କାରଣ ପଥହରା ସମୁଦ୍ରରେ ନାବିକର ଧ୍ରୁବତାରା ଭଳି ଭାରତୀୟ ଜନ-ସମୁଦ୍ରରେ ଜନଗଣନା ହେଉଛି ଯଥାର୍ଥରେ ଯୋଜନାର ଧ୍ରୁବତାରା।

ଗଣନାକାରୀଙ୍କ ସୁବିଧାଲାଗି ୧୯୮୪ରୁ ଏକ ଜନଗଣନା ଆଇନ୍ ପ୍ରସ୍ତୁତ କରାଯାଇ ଏହାର କାର୍ଯ୍ୟ ନିର୍ବାହର ପଦ୍ଧତି ପ୍ରସ୍ତୁତି କରାଯାଇଅଛି। ତଥାପି କ୍ରମବର୍ଦ୍ଧିଷ୍ଣୁ ଭାରତୀୟ ଜନସଂଖ୍ୟା ପରିପ୍ରେକ୍ଷୀରୁ ବିଚାର କଲେ ଜଣାଯାଏ - ଅଦ୍ୟାପି ଆମ ଦେଶରେ ଶିକ୍ଷାର ପ୍ରଭୂତ ପ୍ରସାର ହୋଇନଥିବାରୁ ଜନସଚେତନତା ଅଭାବରେ ଓ କେତେକ ସ୍ଥଳରେ ଗମନାଗମନର ସୁବିଧା ନଥିବାରୁ ତଥ୍ୟ ସଂଗ୍ରହ କଲାବେଳେ ଗଣନାକାରୀଙ୍କୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥାଏ। ମୁଖ୍ୟତଃ ଶିକ୍ଷକମାନଙ୍କୁ ଗଣନାକାରୀ ଭାବେ ଏହି ଗୁରୁଦାୟିତ୍ୱ ଦିଆଯାଇଛି। ତେଣୁ ମନେହୁଏ ଶିକ୍ଷିତ ଗୁରୁବର୍ଗଙ୍କୁ ଜନସାଧାରଣଙ୍କଠାରୁ ତଥ୍ୟ ସଂଗ୍ରହ କରିବା ଦୁଃସାଧ୍ୟ ହେବ ନାହିଁ। କେବଳ ଦୃଢ଼ ଆନ୍ତରିକତା ଓ ଜନସହଯୋଗ ଏହାର ସଫଳ ରୂପାୟନ ଦିଗରେ ସମର୍ଥ ହେବ ଓ ଜାତି ପାଇଁ ଆତ୍ମପ୍ରତ୍ୟୟ ଯୋଗାଇ ପାରିବ।

*ଜନଗଣନା ନିର୍ଦ୍ଦେଶାଳୟ*
*ଭୁବନେଶ୍ୱର*



# ପରବ୍ ୨୦୧୧

ପ୍ରଫେସର ବି.ବି. ହୋତା

ଦଶ୍ ବଛରେ ଥରେ ଆଏସି ମୁନୁଷ୍ ଗଣାର ଦିନ୍
ଗାଁ ସହରେ ମାଷ୍ଟର ମାନେ ଗନ୍‌ବେ ଏକ୍ ଦୁଇ ତିନ୍ ।

ଘର୍ ଘର୍ ବୁଲି ପଚରେ ପଚରେଇ ଲେଖବେ କେତେ କଥା
ଯେତେ ପାର୍‌ବ ଉତ୍ତର୍ ଦେବ ଲାଗଲେ ଗଲେ ଅଥା ।

ଗଣେଇ ହେବାର ଅଧିକାର ତୁମର୍, ଗଣେଇ ହେବ ନିଜେ
ଘର ପରିବାର୍ ସମ୍‌କୁ ଗଣାବ, ଛୁଆ, ମା ଆଉର୍ ନିପାରୁମାନଙ୍କୁ ନିଷ୍ଣେ ।

ଯାହା କହେବ ଗୁପତ୍ ଥିବା, ତୁମର ଭଲେ କାମ୍ ଆସବା
ନାଇଁ କହେଲେ, ଆଇନ୍ ତୁମକେ ରାସ୍ତା ଦେଖାଇ କୁହାଇ ନେବା ।

ପହେଲା ଛଅଟା ଉତ୍ତର ସୋଜା, ନାଁ, ଘରମୁଖିଆ, ବୟସ୍ ଆଉ ବିହା, ବିହାକେବେ
ମାଇଝି ମୁନୁଷ୍ ତ ସାଦା, ରଙ୍ଗ ହେଲେବି କହେଲେ ସିଏ ଇଥର ଲେଖା ହେବେ ।

ଧରମ୍, ଜାତି, ମାଆର ଭାଷା, ଅଉ ଜାନ୍‌ଲା ଭାଷା,
ଲେଖା ପଢା, କାମ୍ କରା, କେନୁ ଆଏଲ, ଛୁଆ ପିଲା କଥା ।

ଏତକି କଥା ପଚରା ହେବା କାଏଡ୍ କିଛି ନୁହେଁ
ବନ୍ଧୁ ବାନ୍ଧବ ସମ୍‌କୁ କହ, ଗଣେଇ ହେବେ, ଉତ୍ତର ଦେବେ ସିଏ ।

ଜନଗଣନାର ପରବ୍ ଆସେ ଦଶ ବଛରେ ଥରେ
ଖୁସି ଖୁସିଥି ମିଶିଯ ସଭେ ମୁନୁଷ ମାନଙ୍କର ଭିଡେ ।

ଦଶବଛରର ଇ ପର୍ବେ ଆନନ୍ଦ ନାଇଁ ନେଲେ,
ଦଶବରଷତକ୍ ସୁମରୁ ଥିବ, ନିଜର୍ କ୍ଷତି ଗାଁର କ୍ଷତି ହେଲେ ।

ଯୁଗ୍ମ ନିର୍ଦ୍ଦେଶକ
ଜନଗଣନା ନିର୍ଦ୍ଦେଶାଳୟ, ଭୁବନେଶ୍ୱର

